**ମଣିଷ ଭାଲୁ** (ବଦ୍ରି ମିଶ୍ର) **ମଣିଷ ଭାଲୁ**



**ପରିଚୟ:**
ପିତା ✓ ଭଗବାନ ମିଶ୍ର,
ମାତା- ✓ ହାରାମଣୀ ଦେବୀ

**ଜନ୍ମସ୍ଥାନ :**
ଶ୍ରୀମନ୍ଦିର ମାର୍ଗ, ପୁରୀ ସହର

**ବାସସ୍ଥାନ:**
'ଆଶୀର୍ବାଦ', ସର୍ବୋଦୟ ନଗର,
ପୁରୀ ସହର, ଓଡ଼ିଶା

**ଜନ୍ମକାଳ :**
ତା ୦୫.୦୨.୧୯୫୯

**ଶିକ୍ଷା :**
ଏମ୍.ଏ, ଏଲ୍.ଏଲ୍.ବି, ଏଲ୍. ଉଡ଼ି.

**ସ୍ୱୀକୃତି ଓ ସମ୍ମାନ :**
ଡଃ ମହତାବ, ନନ୍ଦିନୀ ଶତପଥି, ଜାନକୀବଲ୍ଲଭ ପଟ୍ଟନାୟକ ଓ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ସମ୍ମାନୀତ । ପୁରୀରୁ ଶ୍ରୀକ୍ଷେତ୍ର ଶ୍ରୀ, କୁମାର ଉତ୍ସବ ସମିତି, ଶ୍ରୀକ୍ଷେତ୍ର ଯୁବ ସାଂସ୍କୃତିକ ଅନୁଷ୍ଠାନ ଫଳରୁ ସାହିତ୍ୟ ସଂସଦ, ବ୍ରହ୍ମପୁର, ସବୁଜକ୍ଲବ, କଟକ, ମେହେର୍ ସାହିତ୍ୟ ସଂସଦ, ସମ୍ବଲପୁର, ଉତ୍କଳ କଲଚରାଲ୍ ଆସୋସିଏସନ୍, ନେତାଜୀ ଶତବାର୍ଷିକୀ କମିଟି, ଓଡ଼ିଶା ଯୁବ ଲେଖକ ସଂଗଠନ, ଯୁବ ସାହିତ୍ୟ କଥା, ଫୁଲବାଣୀ, ଲେଖକ ସାନ୍ନିଧ୍ୟ, ବଲାଙ୍ଗୀର, ବିଶ୍ୱମ୍ଭର ବିଦ୍ୟାପୀଠ ସୁବର୍ଣ୍ଣ ଜୟନ୍ତୀ, ଅଭିନନ୍ଦନିକା ଓ ଭୁବନେଶ୍ୱର ଯୁବଗୋଷ୍ଠୀ ପୁରସ୍କାର ।

**ସଂକ୍ଷେପରେ :**
**ବଦ୍ରି ମିଶ୍ର**, ଏକାଧାରରେ ଜଣେ ଶିଶୁ ସାହିତ୍ୟିକ, କବି, ଗାଳ୍ପିକ, ବ୍ୟଙ୍ଗକଥାକାର, ଆକାଶବାଣୀ ଦୂରଦର୍ଶନ ଓ ଚଳଚ୍ଚିତ୍ର ଅଭିନେତା । ଏତଦ୍‌ଭିନ୍ନ ଶ୍ରୀ ମିଶ୍ର, କେନ୍ଦ୍ରୀୟ ଆଦିତ୍ୟ ବାହିନୀର ଅଧକ୍ଷ, ଓଡ଼ିଶା ବନ ଶ୍ରମିକ କଲ୍ୟାଣ ସଂଗଠନର ରାଜ୍ୟ ସଭାପତି, ''ପଢ଼ନ୍ତୁ''ର ଉପଦେଷ୍ଟା ଓ ସର୍ବୋଦୟ ସାହିତ୍ୟ ସଂସଦର ସଂପାଦକ । ୧୯୭୮ ମସିହାରୁ ଏଯାବତ୍ ତାଙ୍କର ୩୪ଟି ଗଳ୍ପ, ୧୪ଟି କବିତା, ୨୧ଟି ଶିଶୁ କବିତା, ୭ଟି ଶିଶୁ ଗଳ୍ପ, ୨୭ଟି ବ୍ୟଙ୍ଗ ଗଳ୍ପ ଓ ୧୮ଟି ଫିଚର୍ ଓଡ଼ିଶାର ସମସ୍ତ ସମ୍ବାଦପତ୍ର, ପତ୍ରପତ୍ରିକାରେ ପ୍ରକାଶ ପାଇସାରିଛି । ୧୯୯୫ରେ ତାଙ୍କ ରଚିତ୍ ବ୍ୟଙ୍ଗଗଳ୍ପ ସଂକଳନ **''କ୍ୟାପିଟାଲିଆ ହଡ଼ା''** ସମଗ୍ର ଓଡ଼ିଶାରେ ଚହଳ ସୃଷ୍ଟି କରିଛି । ପ୍ରଥମ ଥର ପାଇଁ ସାହିତ୍ୟକୁ ଅମଣିଷକୁ ଉତ୍ସର୍ଗ କରି ସେ ବହୁ ଚର୍ଚ୍ଚିତ । ସମାଜର ଆବେଗ, ଯନ୍ତ୍ରଣା ଓ ନିଚ୍ଛକ ମହାସତ୍ୟ ତାଙ୍କ ସାହିତ୍ୟରେ ପ୍ରତିଫଳିତ ।

**ପ୍ରକାଶ ଅପେକ୍ଷାରେ :**
ଗଳ୍ପ ସଂକଳନ- ''ଛେଳି'' ଓ ଶିଶୁ କବିତା ସଂକଳନ - ''ଚୁଆଁକୁ ଚୁଇଁ'' ।



# ମଣିଷ ଭାଲୁ

## ଉତ୍ସର୍ଗ

ଅଖଣ୍ଡ ଭାରତ ର ଅମଣିଷମାନଙ୍କୁ, ମଣିଷ କରିବାପାଇଁ ସଦା ଚେଷ୍ଟିତ

ପଦ୍ମଶ୍ରୀ ବିଭୂଷିତ ଗୋବର୍ଦ୍ଧନପୀଠ ଅଧୀଶ୍ୱର ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ

ସ୍ୱାମୀ ନିଶ୍ଚଳାନନ୍ଦ ସରସ୍ୱତୀଙ୍କ ପଦଯୁଗଳରେ

# ମଣିଷ ଭାଲୁ



ପ୍ରକାଶିକା — ସୁଲୋଚନା ମିଶ୍ର
'ଆଶୀର୍ବାଦ ପ୍ରକାଶନୀ'
ସର୍ବୋଦୟ ନଗର, ପୁରୀ - ୨
ଦୂରଭାଷ- ୦୬୭୫୨-୨୫୮୬୬

ଆଭ୍ୟନ୍ତରିଣ
ଅଙ୍କନ କରଣ — ଶିଳ୍ପୀ ଭରତ ଦାସ
ବଡଶଙ୍ଖ, ପୁରୀ-୨

ପ୍ରଚ୍ଛଦ — ଶିଳ୍ପୀ କିଶୋର ରଥ (କଟାକ୍ଷ)
ସମ୍ବାଦ, ଏ/୬୨, ନୂଆପଲ୍ଲୀ, ଭୁବନେଶ୍ୱର.

ମୁଦ୍ରଣ — ରମାପ୍ରେସ, ଦ୍ରାମାଡି ମଠ,ଉତ୍ତର ଦ୍ୱାର, ପୁରୀ
ଫୋନ୍ -୨୨୧୪୫

ପ୍ରଥମ ସଂସ୍କରଣ — ଅକ୍ଷୟତୃତୀୟା, ୧୯୯୭

ମୂଲ୍ୟ — ଟ ୨୫ (ପଚିଶ ଟଙ୍କା) ମାତ୍ର

# ଆପଣାର ମଣିଷ ମାନେ

ଉନ୍ମୋଚକ : ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ, ଐତିହାସିକ, ଔପନ୍ୟାସିକ, ଗବେଷକ ତଥା ମାନ୍ୟବର ମୁଖ୍ୟମନ୍ତ୍ରୀ, ଓଡ଼ିଶା

ପ୍ରେରଣା ପଟୁରାନନ୍ଦ, ମହାପାତ୍ର ନୀଳମଣି ସାହୁ, ଡଃ ସତ୍ୟନାରାୟଣ ରାଜଗୁରୁ, ମନୋଜ ଦାସ, ଅଚ୍ୟୁତାନନ୍ଦ କର, ଶାନ୍ତନୁ ଆଚାର୍ଯ୍ୟ, ରବି ସିଂ, ସୌମ୍ୟ ରଂଜନ ପଟ୍ଟନାୟକ, ଚୌଧୁରୀ ହେମକାନ୍ତ, ହରପ୍ରସାଦ ପରିଚ୍ଛା ପଟ୍ଟନାୟକ, ରାମଚନ୍ଦ୍ର ଖୁଣ୍ଟିଆ, କିଶୋର ପଟେଲ, ଜଗନ୍ନାଥ ପଟ୍ଟନାୟକ, ଉମାବଲ୍ଲଭ ରଥ, ଗଦାଧର ମିଶ୍ର, ସୁରେଶ କୁମାର ରାଉତରାୟ, ଡଃ ସିଦ୍ଧେଶ୍ୱର ମହାପାତ୍ର, ସୁରେଶଚନ୍ଦ୍ର ମହାପାତ୍ର, ସୁଶୀଲ କୁମାର ପ୍ରଧାନ, ସୂର୍ଯ୍ୟ ମିଶ୍ର, ରାଧାମୋହନ ମହାପାତ୍ର, ଅସୀତ୍ ମହାନ୍ତି, ଶ୍ରୀକୁମାର ଶୁକ୍ଳା, ପ୍ରଶାନ୍ତ ମହାପାତ୍ର, ସତ୍ୟନାରାୟଣ ଅଗ୍ରୱାଲ୍, କେଶବଚନ୍ଦ୍ର ରାଜଗୁରୁ, ବଳରାମ ଦାଶ ଶର୍ମା, ଅଜୟ କୁମାର ମହାପାତ୍ର, ବେଣୁଧର ପ୍ରଧାନ, ନିରଂଜନ ଚୌଧୁରୀ, ବ୍ରଜନାଥ ରଥ, ହାଡିବନ୍ଧୁ ମିଶ୍ର, କୃଷ୍ଣଚନ୍ଦ୍ର ପଣ୍ଡା, ରାଧାରଂଜନ ପଟ୍ଟନାୟକ, ମୂରଲୀଧର ପଣ୍ଡା ।

କୃତଜ୍ଞତା ତିରୁପତି ସୁବୁଦ୍ଧି
ପ୍ରୋ: ମେସର୍ସ ତିରୁପତି ଏଜେନ୍ସି
ବଡ଼ଦାଣ୍ଡ, ପୁରୀ

# ମୋର ଶୁଭେଚ୍ଛୁମାନେ

**ଦିଗ୍ ଦର୍ଶନ :** ସୁଶାନ୍ତ ମିଶ୍ର, ବିଜୟ ସାମନ୍ତରାୟ, ରାଜୀବ ମିଶ୍ର, ଶିବ ପ୍ରସାଦ ମିଶ୍ର, ସୁକାନ୍ତ ଲେଙ୍କା, ବିଭୂତି ମିଶ୍ର, ଶ୍ରୀମୟ କର, ପ୍ରକାଶ ଶତପଥି, ବିଷ୍ଣୁ ମିଶ୍ର, ସଂଜୟ ମିଶ୍ର, ପ୍ରଦିପ୍ତ ଦାସ, ସୂର୍ଯ୍ୟ ମହାପାତ୍ର, ବିଶ୍ୱରଂଜନ ମହାପାତ୍ର, ଇପସିତ୍ ପ୍ରତିହାରୀ, ନିମେଇଁ ମହାନ୍ତି, ସୌମେନ୍ଦ୍ର ଦାସ, ଜ୍ୟୋତ୍ସ୍ନା ରାଉତରାୟ, ଗୌରହରି ଦାସ, ରାଧାନାଥ ମହାପାତ୍ର, ଜିମୂତ ତ୍ରିପାଠୀ, ଅଶୋକ ପାଲିତ୍, କପିଳାସ ଭୂୟାଁ, ନବୀନ ଦାସ, ବିଜୟ ପଟ୍ଟନାୟକ, ପ୍ରକାଶ ଦାସ, ରୁଦ୍ର ସିଂ, ବିନାୟକ ଦାଶ, ନିର୍ମଳ ମିଶ୍ର, ଅକ୍ଷୟ ପ୍ରଧାନ, ଶଶୀଭୂଷଣ ବେହେରା, ବିପିନ ବିହାରୀ, ପ୍ରଫୁଲ୍ଲ ମିଶ୍ର, ଜୁପିଟର ଦାସ, ମହେନ୍ଦ୍ର ବିଶୋଇ, ପ୍ରଭୁକଲ୍ୟାଣ ମହାପାତ୍ର, ଅମରେଶ ବିଶ୍ୱାଳ, ସମରେନ୍ଦ୍ର ନାଥ ମହାପାତ୍ର, ସନତ୍ ମିଶ୍ର, ଡଃ ବିଜୟାନନ୍ଦ ସିଂ, ତ୍ରୈଲୋକ୍ୟ ମୋହନ ଷଡ଼ଙ୍ଗୀ, ବିଧୁଭୂଷଣ ମାନସିଂହ, ପ୍ରତିମା ମିଶ୍ର, ଅଶୋକ ସାହୁ, ଗିରିଜା ବଳିୟାର ସିଂ, ନିରାକାର ସାହୁ, ଶଙ୍କରାନନ୍ଦ ଦାସ,ନଟ ଆଚାର୍ଯ୍ୟ, ରୁଦ୍ରମଣି ସାହୁ, ଏମ୍. ଆର. କେ. ଆର୍., ସୁରେଶ ଅଗ୍ରୱାଲ୍, ଜୟକୃଷ୍ଣ ସୁବୁଦ୍ଧି ଓ ଆଶୀଷ ଦାସ ।

**ଶୁଭେଚ୍ଛୁ** କବୟତ୍ରୀ ଲକ୍ଷ୍ମୀ ଶତପଥୀ (ନାନୀ), ବିଭାସ ମହାପାତ୍ର, ବୁଦ୍ଧ ମହାପାତ୍ର, ପ୍ରଦୀପ୍ତ ମିଶ୍ର, ଶ୍ରୀଧର ମାଝି, ସୁଦର୍ଶନ ପ୍ରଧାନ, ଶିବରାମ ବେହେରା, ଶରତ ମିଶ୍ର, ପ୍ରସନ୍ନ ମହାପାତ୍ର, ଗଗନ ପଟ୍ଟନାୟକ, ଜ୍ୟୋତି ପ୍ରକାଶ ମହାପାତ୍ର, ଅଜୟ ମହାପାତ୍ର, ଶାନ୍ତିଭୂଷଣ ରଥ, ରଘୁନାଥ ସେଠୀ, ମନୋଜ ରଥ, ଦାମୋଦର ନନ୍ଦ, ଗୋପାଳ ତ୍ରିପାଠୀ, ପିତାମ୍ବର ପଟ୍ଟନାୟକ, ମନୋରଂଜନ ମିଶ୍ର, ସୁବାସ ଧଳ, ସୁରେନ୍ଦ୍ର ନାୟକ, ଶିବ ମିଶ୍ର, ମାନସ ପଟ୍ଟନାୟକ, ଚଣ୍ଡି ସିଂ, ଶୂଳପାଣି କର, ହୃଦାନନ୍ଦ ମିଶ୍ର, କୃଷ୍ଣଚନ୍ଦ୍ର ମିଶ୍ର, ଦେବଦତ୍ତ ସାମନ୍ତସିଂହାର, ସୁଶାନ୍ତ ସାହୁ, ପ୍ରସନ୍ନ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର, ବି.ବି. ସୋନା, ପ୍ରକାଶ ଜେନା, ବାବାଜୀ ଦାଶ,ଦେବୀ ରାଜଗୁରୁ, ନୀଳକଣ୍ଠ ପାଣି, ବିଜୟ ମିଶ୍ର, ସୂର୍ଯ୍ୟମହାନ୍ତି, ଓ ଅଶ୍ୱିନୀ କୁମାର ପଣ୍ଡା ।

# ଆଶୀର୍ବଚନ



**ଅନନ୍ତ ଶ୍ରୀ ବିଭୂଷିତ ଗୋବର୍ଦ୍ଧନପୀଠାଧୀଶ୍ୱର ଜଗଦ୍‌ଗୁରୁ ଶଂକରାଚାର୍ଯ୍ୟ**

**ପୁରୀ**

**।। ଶ୍ରୀହରି ।।**

ମାନବ ମସ୍ତିଷ୍କ କୋ ସମ୍ମୁନୀତ କରନେକେ ଲିୟେ, ଲୋଭ ଔର ଭୟ ସେ ଅନାକ୍ରାନ୍ତ ବିବେକୀ ମନିଷିୟୋଁ କି ଲେଖନୀ ଜାଗରୂକ୍ ରହେ, ୟହ ଆବଶ୍ୟକ ହେ । ସଦାଚାର ଔର ସଦ୍‌ବିଚାର ସଂପନ୍ନ ମନୁଷ୍ୟ ହି, ସମାଜ କୋ ସ୍ୱସ୍ଥ ଦିଶା ପ୍ରଦାନ କରନେ ମେଁ ସମର୍ଥ ସିଦ୍ଧ ହୋ ଶକତା ହୈ ।

ସମାଜ କୋ ସ୍ୱସ୍ଥ ଦିଶା ଦେନେ ମେଁ କେନ୍ଦ୍ରୀୟ ଆଦିତ୍ୟ ବାହିନୀ କା ଅଧ୍ୟକ୍ଷ ତଥା ବ୍ୟଙ୍ଗ କଥାକାର ବଦ୍ରିମିଶ୍ର ଦ୍ୱାରା ପ୍ରସ୍ତୁତ ଇସି ପ୍ରବନ୍ଧ ସଫଳ ହୋ, ଐସୀ ଭାବନା ହେ ।

***ସ୍ୱାମୀ ନିଶ୍ଚଳାନନ୍ଦ ସରସ୍ୱତୀ***

*ତା ୧୦-୦୪-୯୭*

# ପଦ୍ମଶ୍ରୀ ଡଃ ସତ୍ୟନାରାୟଣ ରାଜଗୁରୁ

### ଐତିହାସିକ ତଥା ଗବେଷକ

## • ଶେଷ ଆଶୀର୍ବାଦ •

ସେ ସଂସ୍କୃତି ଆଜି ନାହିଁ । ସେତେବେଳେ ନଥିଲା ପରଶ୍ରୀକାତରତା, ଦ୍ୱେଷ କିମ୍ବା ସ୍ୱାର୍ଥ । ମଣିଷମାନେ ଚର୍ତୁଧାମ ଭ୍ରମଣ କରି ବିଭିନ୍ନ ଗୋଷ୍ଠୀ ଓ ସଂପ୍ରଦାୟର ମଣିଷମାନଙ୍କଠାରୁ ସତ୍‌ଶିକ୍ଷା ପାଉଥିଲେ । ଅମରକୋଷ, ଯୁମର ବ୍ୟାକରଣ, ଚାଣକ୍ୟନୀତି, ମନୁଙ୍କ ଧର୍ମଶାସ୍ତ୍ରକୁ ଅନୁସରଣ କରି, ସେଦିନର ସମାଜ ଥିଲା ଉନ୍ନତ, ଶାନ୍ତ ଓ ଶୃଙ୍ଖଳମୟ । ସମୟ କ୍ରମେ ଶକ, ଯବନ ମାନଙ୍କ ଭାରତ ଆକ୍ରମଣ, ଲର୍ଡ କ୍ଲାଇବଙ୍କ ପରେ, କଳିକତା ସଭାରେ ଭାରତରେ ଇଂରାଜୀ ଭାଷାକୁ ଶିକ୍ଷାଭାଷା ରୂପେ ହୋଇଥିବା ନିଷ୍ପତି ଓ ପାଶ୍ଚାତ୍ୟ ଜଗତର ଅଣହିନ୍ଦୁମାନଙ୍କ ଶିକ୍ଷାରୁ ଆମେ ଶିକ୍ଷିତ ହୋଇ ସମାଜକୁ ଠକି ହିଁ ଶିଖିଲେ । ସେଥିପାଇଁ ଆଜି ଭାରତର ରାଜନୈତିକ ଓ ସାମାଜିକ ସ୍ଥିତି କଳଙ୍କିତ । ପ୍ରାଚୀନ ଯୁଗରେ ବିଦୂଷକ ମାନେ, ରାଜାଙ୍କୁ ଦେଶର ସମସ୍ୟା, ସମାଜର ସମସ୍ୟା ସଂପର୍କରେ ସଚେତନ କରାଉଥିଲେ, ଯାହା ଆଜି ନାହିଁ ।

ତେବେ ଆଜିର ସମାଜରେ ପାପ-ପୂଣ୍ୟ, ଧର୍ମ-ଅଧର୍ମ ସଂପର୍କରେ ଗଣତନ୍ତ୍ରକୁ ଜଣାଇ, ନିଜର ସଂସ୍କୃତି, ସାହିତ୍ୟ ଓ ଭାଷାର ସୁରକ୍ଷା ପାଇଁ ସେଦିନର ରାଜଦରବାରର ବିଦୂଷକ ଭାବେ, ଯୁବପିଢ଼ୀର ବ୍ୟଙ୍ଗ ଲେଖକ ବଦ୍ରିମିଶ୍ର, ଆଜିର ସାମାଜିକ ବ୍ୟାଧିକୁ ମନନଶୀଳ ବକ୍ରୋକ୍ତି ମାଧ୍ୟମରେ ସମାଜରେ ପହଞ୍ଚାଇବାପାଇଁ ଯେଉଁ ଉଦ୍ୟମ ଆରମ୍ଭ କରିଛନ୍ତି, ତାହା ପ୍ରଶଂସନୀୟ ।

ମୋର ବିଶ୍ୱାସ, ତାଙ୍କର ଗଳ୍ପ, ଟୁଟୁବୋଉର ପାଦ, ମନ୍ତ୍ରୀଙ୍କ ଭାଗବତ ଟୁଙ୍ଗୀ, ମେଡ୍‌ଇନ୍ ଇଣ୍ଡିଆ, ମଣିଷଭାଲୁ, ଦେଶରଜାଙ୍କ ମଧ୍ୟାହ୍ନ ଭୋଜନ, ଆସ ଶହୀଦ ହେବା, ସ୍ମୃତିଚାରଣ କମିଟିର ଭାବ, ଦିନେ ଦେଶର ସମସ୍ତ ଅଳିଆକୁ ଓଳାଇଦେବ । ମୋର ଆଶୀର୍ବାଦ ତାଙ୍କ ରମ୍ୟରଚନା ସମାଜକୁ ନୂତନ ଦିଗ୍‌ଦର୍ଶନ ଦେଉ ।

ମଂଗଳ ଓ ଦୀର୍ଘାୟୁ କାମନା ସହ

ତା ୧୩-୪-୯୭ **ଶ୍ରୀ ସତ୍ୟନାରାୟଣ ରାଜଗୁରୁ**

(ମହାପ୍ରୟାଣ ପୂର୍ବରୁ)

# ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ

**ଐତିହାସିକ, ଔପନ୍ୟାସିକ, ଗବେଷକ**



ଗଣତନ୍ତ୍ରର ସୁପରିଚାଳନା ପାଇଁ ବ୍ୟଙ୍ଗ ସାହିତ୍ୟର ବହୁତ ଆବଶ୍ୟକତା ରହିଛି । ବ୍ୟଙ୍ଗ ଲେଖନୀ ମାଧ୍ୟମରେ ପୃଥିବୀର ବହୁ ରାଷ୍ଟ୍ରରେ ଶାସନତନ୍ତ୍ରର ବ୍ୟାପକ ପରିବର୍ତ୍ତନ ଆସିଛି, ଅନେକ ଦେଶ ସ୍ୱାଧୀନ ହୋଇଛି । ଆଜିର ସାହିତ୍ୟରେ, ବ୍ୟଙ୍ଗ ସାହିତ୍ୟ କ୍ଷେତ୍ରରେ ଯୁବପିଢ଼ୀର ଲେଖକ ବଦ୍ରିମିଶ୍ର ଏକ ଆହ୍ୱାନ । ତାଙ୍କର ଅନେକ ରମ୍ୟରଚନା ଓ ଓଡ଼ିଶାର ଜନ ଜୀବନକୁ ନେଇ ବଳିଷ୍ଠ ଲେଖା ପଢ଼ିବାର ସୁଯୋଗ ପାଇଛି । ୧୯୯୫ ମସିହାରେ ତାଙ୍କ ରଚିତ "କ୍ୟାପିଟାଲିଆହଡ଼ା"ର ଉନ୍ମୋଚନ ସମୟେ, ଶ୍ରୀ ମିଶ୍ରଙ୍କ ବକ୍ର କଥାଶୈଳୀକୁ ପାଖରୁ ଦେଖିଛି । ତାଙ୍କର ୨ୟ ରମ୍ୟରଚନା ସଂକଳନ "ମଣିଷଗାଲୁ"ର ପ୍ରକାଶନରେ ମୁଁ ଆନନ୍ଦିତ ।

ଓଡ଼ିଆ ଭାଷା ସାହିତ୍ୟର ରକ୍ଷା ଓ ଉନ୍ନତି ପାଇଁ ତାଙ୍କର ଏ ଚେଷ୍ଟା ବଳବତ୍ତର ରହୁ, ଏହା ହିଁ କାମନା ।

ହିତାକାଂକ୍ଷୀ

*ଜାନକୀବଲ୍ଲଭ ପଟ୍ଟନାୟକ*

## ରାଧା ମୋହନ ମହାପାତ୍ର

ଔପନ୍ୟାସିକ

"ପ୍ରତିଭାନୀ"

୧୪୭, ବୁଦ୍ଧେଶ୍ୱରୀ, ଭୁବନେଶ୍ୱର-୬

### • ମୋ ଦୃଷ୍ଟିରେ •

"କ୍ୟାପିଟାଲିଆ ହଡ଼ା"ର ସଫଳତା ପରେ ଶ୍ରଦ୍ଧେୟ ବ୍ୟଙ୍ଗ କଥାକାର ଶ୍ରୀ ବଦ୍ରିମିଶ୍ରଙ୍କର ଅନ୍ୟତମ ବ୍ୟଙ୍ଗ ଗଳ୍ପ ସଂକଳନ "ମଣିଷଭାଲୁ" ଅଚିରେ ପ୍ରକାଶ ଲାଭ କରୁଛି ପୁସ୍ତକ ଆକାରରେ । ଓଡ଼ିଶାର ଯେଉଁ କେତେଜଣ ମୁଷ୍ଟିମେୟ ଓଡ଼ିଆପ୍ରାଣ ଉତ୍ସାହୀ ଯୁବ ଲେଖକ, ଲେଖାକୁ ଏକ ନିଶାଭାବେ ଗ୍ରହଣ କରିନେଇ ଓଡ଼ିଆ ଭାଷା ସେବାରେ ବ୍ରତୀ ହୋଇଛନ୍ତି, ମୁଁ ନିଃସଙ୍କୋଚରେ କହିବି, ବଦ୍ରିଙ୍କ ନାମ ନିଶ୍ଚିତ ଭାବରେ ସବା ଆଗଧାଡ଼ିରେ । କେବଳ ଲେଖନୀରେ ନୁହେଁ, କର୍ମରେ ମଧ ସେ ଖୁବ୍ ତତ୍ପର । ଜଣେ ସାହିତ୍ୟ ସଂଗଠକ ଭାବେ ସେ ଓଡ଼ିଶାରେ ଖୁବ୍ ପରିଚିତ ଏବଂ ଆଦୃତ । ତାଙ୍କର କର୍ମନିଷ୍ଠତା ଓ ଲେଖନୀ ତଥା ଭାଷା ରକ୍ଷା ନେଇ ନିଷ୍ଠା, ମୋତେ ଅଭିଭୂତ କରିଛି, ଅନୁପ୍ରେରିତ କରିଛି କହିଲେ ବୋଧହୁଏ ବେଶି ଠିକ୍ ହେବ । ବଦ୍ରିଙ୍କର ବିଶେଷତ୍ୱ ହେଉଛି, ସେ ବକ୍ରଲେଖାରେ ଖୁବ୍ ସିଦ୍ଧ ହସ୍ତ । କଥାକୁ ସିଧା ନକହି, ତୀର୍ଯ୍ୟକ ଭାବେ ପ୍ରକାଶ କଲେ ତାହା ଅଧିକ ଆକର୍ଷଣୀୟ ହୋଇଥାଏ, ସେଥିରେ ସମାଲୋଚନାର ତରବାରୀର ଗତି କ୍ଷିପ୍ର ।

ଆଜିକାଲି ବ୍ୟଙ୍ଗ ଲେଖା କମି ଆସୁଥିବାବେଳେ ବଦ୍ରିଙ୍କ ଉଦ୍ୟମକୁ ବଧାଇ ଦେଉଛି । ତାଙ୍କ "ମଣିଷଭାଲୁ" ପରୋକ୍ଷରେ ମଣିଷମାନଙ୍କ ପାଇଁ ଏକ ଚେତାବନୀ । ବଦ୍ରିଙ୍କର ତୀରର ତରଙ୍ଗ ଆହୁରି ଶାଣିତ ହେଉ । ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିବାରେ ତାଙ୍କର ଅଦମ୍ୟ ଚେଷ୍ଟା ସଦା ଅତୁଟ ରହିଥାଉ । ବଦ୍ରି ଯଶସ୍ୱୀ ହୁଅନ୍ତୁ । ତାଙ୍କର ଲେଖା ସମାଜରେ ନୂତନ ଦିଗ୍‌ଦର୍ଶନ ଆଣୁ, ଏହା ହିଁ କାମନା ।

ଶୁଭାକାଂକ୍ଷୀ

*ରାଧା ମୋହନ ମହାପାତ୍ର*

*ତା ୩୧-୦୩-୯୭*

# ଶ୍ରୀ କିଶୋର ଚନ୍ଦ୍ର ପଟେଲ

ମନ୍ତ୍ରୀ



ଜଙ୍ଗଲ ଓ ସରକାରୀ ଉଦ୍ୟୋଗ, ଓଡ଼ିଶା

ଓଡ଼ିଶାର ବିଶିଷ୍ଟ ବ୍ୟଙ୍ଗ କଥାକାର ଶ୍ରୀ ବଦ୍ରିମିଶ୍ରଙ୍କର ୨ୟ ବ୍ୟଙ୍ଗ ପୁସ୍ତକ ସଂକଳନ **"ମଣିଷଭାଲୁ"** ଉନ୍ମୋଚିତ ନେଇ ବିଶେଷ ଆନନ୍ଦିତ । କର୍ମମୟ ଜୀବନ ତଥା ଟ୍ରେଡ ୟୁନିୟନ ନେତୃତ୍ୱ ଜୀବନ ଭିତରେ, ସମାଜ ଚେତନା ପାଇଁ ଶ୍ରୀ ମିଶ୍ର ଲେଖନୀ ଚାଲୁ ରଖି ପାରିଛନ୍ତି, ଏହାହିଁ ବିସ୍ମୟ ।

ଓଡ଼ିଆ ସାହିତ୍ୟ ରକ୍ଷା ପ୍ରଚେଷ୍ଟାରେ ଶ୍ରୀ ମିଶ୍ରଙ୍କୁ ଭୂୟସୀ ପ୍ରଂଶସା କରିବା ସଂଗେସଂଗେ, **"ମଣିଷଭାଲୁ"** ର ସଫଳତା କାମନା କରୁଛି ।

*କିଶୋର ପଟେଲ*

# ଓଡ଼ିଶା ସାହିତ୍ୟ ଏକାଡେମୀ

## ସଂସ୍କୃତି ଭବନ, ଭୁବନେଶ୍ୱର

## ମୋ କାମନା




"ମଣିଷଭାଲୁ" ପ୍ରକାଶନ ନେଇ ଅତ୍ୟନ୍ତ ଆନନ୍ଦିତ । ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ବ୍ୟଙ୍ଗ କଥାକାର ବଦ୍ରି ମିଶ୍ରଙ୍କର ଉଦ୍ୟମ ପ୍ରଶଂସନୀୟ । ଶ୍ରୀ ମିଶ୍ରଙ୍କର ସୃଜନ ପ୍ରତିଭା ଆହୁରି ସୃଷ୍ଟିଶୀଳ ହୋଇ, ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିବା ସଂଗେ ସଂଗେ ସାହିତ୍ୟିକଙ୍କୁ ସମୁଚିତ ସମ୍ମାନ ଓ ସ୍ୱୀକୃତି ପ୍ରଦାନ କରୁ - ଏହା ହିଁ ବିଭୁ ପଦାରବିନ୍ଦରେ ଐକାନ୍ତିକ କାମନା ।

ଭଗବାନ ଶ୍ରୀ ମିଶ୍ରଙ୍କୁ ଦୀର୍ଘ, ନିରାମୟ ଓ ସଫଳ ଜୀବନ ପ୍ରଦାନ କରନ୍ତୁ, ତାଙ୍କ ସାହିତ୍ୟ, ଓଡ଼ିଆ ସାହିତ୍ୟ ଭଣ୍ଡାରରେ ସ୍ୱତନ୍ତ୍ର ସ୍ଥାନ ନେଉ- ଏହାହିଁ ପ୍ରାର୍ଥନା ।

ସମ୍ମାନର ସହ

**ଡକ୍ଟର ହରପ୍ରସାଦ ପରିଚ୍ଛା ପଟ୍ଟନାୟକ**

**ସଚିବ**

## ସ୍ୱର୍ଗୀୟ ଫତୁରାନନ୍ଦ

ଓଡ଼ିଶାର ବିଶିଷ୍ଟ ବ୍ୟଙ୍ଗ କଥାକାର

• କଟକ •

### • ଅମୃତ ବେହିଆ ପାଇଁ ପଦେ •

ମୁଁ ଖୁସି ହୋଇଗଲି, ଏଇଥିପାଇଁ, ଯେହେତୁ ମୋ ଭଳି ଆଉ ଜଣେ ବୃହତ୍ ଭାଣ୍ଡ, ସାହିତ୍ୟ ଚାଷକୁ ଆସିଗଲେ । ଆମେ ଏଭଳି ଲୋକ ଗୁଡ଼ିଏ ଯେ, ସରସ୍ୱତୀଙ୍କୁ ସାଂଗରେ ନେଲାରୁ, ଲକ୍ଷ୍ମୀ ମୁହଁ ଆଡ଼େଇ ଚାଲିଗଲେ । ବାଣିଜ୍ୟ ପରେ କୃଷିରେ ମନ ଦେଲୁ ଯେ, ଚାଷକୁ ସମାଜର ସାଂସ୍କୃତିକ ଠିକାଦାରମାନେ ଓଲିଆ ଗାଈ ଓ ବୁଲା ଷଣ୍ଢ ଲଗାଇ ଉଜାଡ଼ି ଦେଲେ । ଏଣୁ ଆଦରି ନେଲୁ ଏ ସାହିତ୍ୟ ଚାଷକୁ । ବନ୍ଧୁଙ୍କ କିଛି ଲେଖା, ଶୁଣିବା ସୁଯୋଗ ପାଇ, ମନେ ମନେ ଖୋଜୁଥିଲି । ଦିନେ ପାଇଗଲି ତାଙ୍କୁ । ତାଙ୍କ ନୂଆ ଲେଖା ସହ, ତାଙ୍କର ଜୀବନ କାହାଣୀ ଶୁଣିବା ପରେ ମନେ ହେଲା ସେ ମଧ ମୋ ଭଳି ସମାଜର ଖୁନ୍ଦା, ବିଧା, ଗୋଇଠା ଚାପୁଡ଼ା ଇତ୍ୟାଦି ଖାଇ ଗଇଁଆ ହୋଇ, ତଥାପି ହସି ପାରି ଅମୃତ ବେହିଆ ହୋଇପାରିଛନ୍ତି । ତାଙ୍କର ପ୍ରତିଟି ଲେଖାର ଆରମ୍ଭରୁ ଶେଷ ଶୁଣିବାରେ ଆନନ୍ଦ ପାଇଲି । ମୋର ଅଟଳ ବିଶ୍ୱାସ, ଯୁବ-ପିଢ଼ୀର ଏ ବିସ୍ମୟ ଯୁବକ, ତାଙ୍କର ମଗଜିଆ ଲେଖନୀ ଚାଳନାରେ ଦିନେ ମୋତେ ଡ଼େଇଁତାଇଁ ଉପରକୁ ଉଠିଯିବେ ।

ତାଙ୍କର କଲମ ଚାଲୁରହୁ । ସେ ସଫଳ ହୁଅନ୍ତୁ ।

**ଫତୁରାନନ୍ଦ**

ତା ୧୬ । ୭ । ୯୫




## ମେନକା ଗାନ୍ଧୀ

ପିପୁଲ ଫର ଆନିମଲସ୍

ଏ-୪, ମହାରାଣୀ ବାଗ୍,

ନୂଆଦିଲ୍ଲୀ


### • ମୋର ଇଚ୍ଛା •

ଓଡ଼ିଶାର ଯୁବ ବ୍ୟଙ୍ଗକଥାକାରଙ୍କ ''ମଣିଷଭାଲୁ''ର ପ୍ରକାଶନ ନେଇ ଗର୍ବିତ । ସମାଜରେ ପଶୁପକ୍ଷୀଙ୍କ ସୁରକ୍ଷା ତଥା ମଣିଷମାନଙ୍କୁ ପଶୁତ୍ୱରୁ ମୁକ୍ତ କରିବା ପାଇଁ ବ୍ୟଙ୍ଗ କଥାକାର ବଦ୍ରି ମିଶ୍ରଙ୍କର ଚେଷ୍ଟା ଅଭିନନ୍ଦନୀୟ ।

ତାଙ୍କ ଲେଖା, ସମାଜର ଅମଣିଷମାନଙ୍କୁ ମଣିଷ କରିବାର ଖୋରାକ୍ ଯୋଗାଉ, ଏହାହିଁ ଇଚ୍ଛା ।

ସମ୍ମାନର ସହ

*ମେନକା ଗାନ୍ଧୀ*




''ଓଡ଼ିଆମାନେ ହସି ଜାଣନ୍ତି ନାହିଁ କି ହସାଇ ଜାଣନ୍ତି ନାହିଁ'' ବୋଲି ଏକ ଜାତୀୟ ଅପନିନ୍ଦା ଆମ ମୁଣ୍ଡରେ ଲଦା ହୋଇଛି । କିନ୍ତୁ ଆମ ଜାତି ଅନ୍ୟର କୁତ୍ସାରଟନାରେ ଧୁରନ୍ଧର । ଅନ୍ୟକୁ ଗାଳି ଝିଙ୍ଗାସ କରିବାରେ ଆମ ପାଟିରେ ବାଟୁଳି ବାଜେ ନାହିଁ । ଅନ୍ୟର ତିଳପ୍ରମାଣ ଦୋଷ ଦୁର୍ବଳତା ଓ ନଗଣ୍ୟ ଦୁର୍ଗୁଣ ଗୁଡ଼ିକୁ ତାଳବେତାଳ ସ୍ୱରରେ ଗାୟନ କରିବାରେ ଆମ କଣ୍ଠ ସଦା କୋଳାହଳ ମୁଖର । ଖାଲି ସେତିକି ନୁହଁ, ସ୍ଥଳ ଅମାର୍ଜିତ ଅସଭ୍ୟ ଅଶ୍ଳୀଳ କଥାବାର୍ତ୍ତା କରିବାରେ ବି ଆମର ପ୍ରତିଭା ଓ ପ୍ରବୃତ୍ତି ଅତୁଳନୀୟ ତଥା ଅକଳନୀୟ । ଏବଂ ଆମର ଏଇ ସବୁ ଅସଭ୍ୟ ବାକ୍‌ବ୍ୟସନ ଆମ ହାଣ୍ଡିଶାଳ ଘରୁ ବିଶ୍ୱବିଦ୍ୟାଳୟ ଯାଏଁ ବ୍ୟାପିଥାଏ ଏବଂ ମଠ ମନ୍ଦିରରୁ ବିଧାନସଭାଯାଏ ଗତାଗତ ହେଉଥାଏ । ଆମ ଟାହିଟାପରା ଅଛି ମାତ୍ର ହାସପରିହାସ ନାହିଁ- ଆମର କଥାରେ କେଂଚାକେଂଚି ଅଛି- ଭୁସାଭୁସି ଅଛି- ଆଂପୁତା ରାଂପୁଡ଼ା ବି ଅଛି । ମାତ୍ର ଆମର ବାକ୍ ବୈଦଗ୍ଧ ନାହିଁ । କାରଣ ଆମେ ସଭ୍ୟ ଭବ୍ୟ ବକ୍ରୋକ୍ତି ଜାଣୁନା-ଶ୍ଳେଷ ଜାଣୁନା- ରସାପ୍ଲୁତ ବାକ୍ୟମାନଙ୍କରେ ''ଚଢ଼ାଉତରା'' କରି ଜାଣୁନା ।

ସେଥିପାଇଁ ଆମର ସାମାଜିକ ଜୀବନ ଓ ସାହିତ୍ୟିକ ଜୀବନ ଏତେ ଶୁଷ୍କ, ରୁକ୍ଷ, ନିର୍ଜୀବ ଓ ରଙ୍ଗହୀନ ହୋଇ ପଡ଼ିଛି । ରସତତ୍ତ୍ୱର ନିୟମାନୁସାରେ ଯେ ଠିକ୍ ବେଳାରେ, ଠିକ୍ କଥାରେ, ଠିକ୍ ଭାବରେ ହସି ପାରେନା, ସେ ମଧ୍ୟ ଠିକ୍ ବେଳାରେ, ଠିକ୍ କଥାରେ, ଠିକ୍ ଭାବରେ କାନ୍ଦିପାରେନା । କାରଣ ହସ ଓ କାନ୍ଦ ଗୋଟିଏ ମୁଦ୍ରାର ଦୁଇ ବିପରୀତ ପାର୍ଶ୍ୱ ।

ହସର ଝରଣା ବହିଆସେ ମଣିଷର ଉଦାର ତୀକ୍ଷ୍ଣ, ପରିଶୁଦ୍ଧ ଓ ଆଲୁଅ ଝଲମଲ ଶୁଭ ବୁଦ୍ଧି-ବୃତ୍ତିର ଉଚ୍ଚତମ ଶୃଙ୍ଗ ଗୁଡ଼ିକର କନ୍ଦରା ଭିତରୁ । ଏବଂ କାନ୍ଦର ଝରଣା ମଧ୍ୟ ସେହିପରି ବହିଆସେ ମଣିଷର ଉଦାର ଗଭୀର ସମ୍ବେଦନଶୀଳ ସ୍ୱଚ୍ଛ ହୃଦୟ-ବୃତ୍ତିର ରସାତଳ ଭିତରୁ । ଯେଉଁ ମଣିଷର ମନ ଓ ହୃଦୟ ଭିତରେ ମିଥ୍ୟା, କପଟତା, ନିଷ୍ଠୁରତା, ଈର୍ଷାଦି ଗୁଣ ଗୁଡ଼ିକ ଭରି ହୋଇ ରହିଛି, ତା' ଓଠରେ ଦିବ୍ୟ-ହସ ଖେଳି ପାରେନା- କି ତା' ଆଖିରୁ ଦିବ୍ୟ କାନ୍ଦଣାର ଲୁହ ଝରିଯାଏନା । ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଦେଖିଲେ- ଯେଉଁ ମଣିଷ ହସିପାରେନା କି ହସାଇପାରେନା ତା' ମୁଣ୍ଡରେ ଗୁହ ଭରି ହୋଇଛି । ଏବଂ ଯେ ନିଜେ କାନ୍ଦିପାରେନା କି କାହା ଭିତରେ କରୁଣା ସହାନୁଭୂତି ଜଗାଇ ପାରେନା, ତା' ହୃଦୟରେ ଖାଲି ଗୋବରଗଦା ରହିଛି । ପ୍ରଫୁଲ୍ଲ ଭାବ ଓ କାରୁଣ୍ୟଭାବ ନଥିଲେ ମଣିଷ ପଶୁଠାରୁ ହୀନ ହୋଇଯାଏ । ସ୍ୱାମୀ ବିବେକାନନ୍ଦ, ରାମକୃଷ୍ଣ ପରମହଂସ, ଶ୍ରୀ ଅରବିନ୍ଦ, ରବୀନ୍ଦ୍ରନାଥ, ମହାତ୍ମାଗାନ୍ଧି ପ୍ରମୁଖ ମହାମାନବମାନଙ୍କ ଜୀବନୀ ଅନୁଧ୍ୟାନ କଲେ ଜଣାପଡେ, ସେମାନେ କିପରି ହସନ୍ତି ଓ ଅନ୍ୟକୁ ହସାଇଥାନ୍ତି । ପ୍ରକୃତ ମହାତ୍ମାମାନେ କେବେ ବି ହାଣ୍ଡି ମୁହାଁ - ଭୁସୁଣ୍ଡା ମୁହାଁ ହୋଇ ନଥାନ୍ତି । ସେମାନଙ୍କ କଥାବାର୍ତ୍ତା ସର୍ବଦା ନିର୍ମଳ ହାସ ପରିହାସରେ ଉଚ୍ଛଳ ଓ ପ୍ରାଣବନ୍ତ ଥିଲା ।

ପ୍ରାଣବନ୍ତ ଓ ଶୁଭବୁଦ୍ଧି ଲୋକେ ହସନ୍ତି ଯେପରି- ହସାନ୍ତି ମଧ୍ୟ ସେହିପରି । ହାସ୍ୟରସ, ମଣିଷର ମନକୁ ଓ ବୁଦ୍ଧିକୁ ନିର୍ମଳ ସୁସ୍ଥ କରିଥାଏ । ମୁହଁକୁ ମଧ୍ୟ ସୁନ୍ଦର, ମଧୁର ଓ ଆକର୍ଷଣୀୟ କରିଥାଏ । ବ୍ୟକ୍ତିଗତ ଓ ସାମାଜିକ ଜୀବନ-ପ୍ରବାହରେ ହାସ୍ୟରସର ଝଲମଲ ଢେଉ ନଥିଲେ ସେ ବ୍ୟକ୍ତି ଓ ଜାତିର ବ୍ୟକ୍ତିତ୍ୱ ମଳିନ ଓ ଜୀବନୀଶକ୍ତି ବିରହିତ ହୋଇଯାଏ ।

ପାଶ୍ଚାତ୍ୟ ସଭ୍ୟତା, ସାହିତ୍ୟ ଓ ସଂସ୍କୃତିର ସଂସ୍ପର୍ଶରେ ଆସିଲା ପରେ ଗତ ଦେଢ଼ଶହ ବର୍ଷ ଭିତରେ ଭାରତର ଅନ୍ୟାନ୍ୟ ଭାଷାସାହିତ୍ୟରେ ହାସ୍ୟରସର ଭୂୟୋବିକାଶ ଘଟିଯାଇଛି । ଅଥଚ ଆମ ଓଡ଼ିଆ ସାହିତ୍ୟରେ ତାହା ଶୈଶବାବସ୍ଥାକୁ ବି ଅତିକ୍ରମ କରିଥିଲା ଭଳି ମନେହୁଏ ନାହିଁ । ଏଇ ଶହେବର୍ଷ ଭିତରେ ରାଧାନାଥଙ୍କ ''ଦରବାର'' କାନ୍ତକବି ଲକ୍ଷ୍ମୀକାନ୍ତଙ୍କ କେତେକ ଲାଳିକା, ଗୋପାଳ ପ୍ରହରାଜଙ୍କ ବାଇ ମହାନ୍ତି ପାଞ୍ଜି, ଭାଗବତ ଟୁଙ୍ଗୀରେ ସନ୍ଧ୍ୟା ଓ ଫକୀର ମୋହନଙ୍କ କେତେକ ଗଳ୍ପକୁ ଆମର ଭବ୍ୟ ହାସ୍ୟରସ ବା ବ୍ୟଙ୍ଗ ବିଦ୍ରୂପ ସାହିତ୍ୟର ଭିତ୍ତି ବୋଲି କହାଯାଇପାରେ । ତେବେ ଏଇ ଗତ ପଚାଶବର୍ଷ ଭିତରେ ଗୋଦାବରୀଶ ମହାପାତ୍ର, ଫତୁରାନନ୍ଦ, ଚୌଧୁରୀ ହେମକାନ୍ତ, ମନୋଜଦାସ, ବାମାଚରଣ ମିତ୍ର, ଶାନ୍ତନୁ ଆଚାର୍ଯ୍ୟ, ସୁନୀଲ ମିଶ୍ର, ବୈଷ୍ଣବ ପାଣି ଓ ଗୋପାଳ ଛୋଟରାୟ ପ୍ରମୁଖ ବିଶିଷ୍ଟ କଥାକାର ଓ ନାଟ୍ୟକାରମାନେ ସେମାନଙ୍କ ଲେଖା ଭିତରେ ହାସ୍ୟ ବ୍ୟଙ୍ଗ ବିଦ୍ରୂପକୁ ଯଥୋଚିତ ସ୍ଥାନ ଦେଇଛନ୍ତି । କିନ୍ତୁ ଫତୁରାନନ୍ଦ ଓ ଚୌଧୁରୀ ହେମକାନ୍ତ ଉଭୟେ କେବଳ ହାସ୍ୟରସ ଓ ବ୍ୟଙ୍ଗ ବିଦ୍ରୂପକୁ ଉପଜୀବ୍ୟ କରି ସରସ ସାହିତ୍ୟ ସୃଷ୍ଟି କରିଛନ୍ତି । ଚୌଧୁରୀ ହେମକାନ୍ତ ଓ ମନୋଜ ଦାସ ତାଙ୍କର ସୁରୁଚି ପୂର୍ଣ୍ଣ ବୁଦ୍ଧି-ଦୀପ୍ତ ହାସ୍ୟ ବ୍ୟଙ୍ଗ ରଚନା ପାଇଁ ଆମ ସାହିତ୍ୟରେ ଏକ ଏକ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଅଧିକାର କରିଛନ୍ତି ।

ଏଇ ପଟ୍ଟଭୂମିକାରେ ଦେଖିଲେ ସଂପ୍ରତି ଆମ ଯୁବସାହିତ୍ୟକାରମାନଙ୍କ ସୃଷ୍ଟିରେ ନିର୍ମଳ ହାସ୍ୟ ଓ ଉନ୍ନତ ରୁଚିର ବ୍ୟଙ୍ଗ ବିଦ୍ରୂପ ଦୁର୍ଲଭ ହୋଇପଡ଼ିଛି । ଯେଉଁ କେତେଜଣ ମୁଷ୍ଟିମେୟ ତରୁଣ ଲେଖକ ଏଇ ରସକୁ ନେଇ କାରବାର କରୁଛନ୍ତି- ସେମାନଙ୍କ ମଧ୍ୟରେ ଶ୍ରୀମାନ୍ ବଦ୍ରିମିଶ୍ର ଜଣେ ଉଦୀୟମାନ ହାସ୍ୟ ଓ ବ୍ୟଙ୍ଗ ପ୍ରତିଭାରୂପେ ଉଦୀୟମାନ ହୋଇଛନ୍ତି । ତାଙ୍କର ଅନେକ ହାସ୍ୟ ବ୍ୟଙ୍ଗାତ୍ମକ ରଚନା ପାଠକରି ମୁଁ ଏହି ନବାଗତ ରସ ସ୍ରଷ୍ଟାଙ୍କର ସୁବର୍ଣ୍ଣ ଭବିଷ୍ୟତ ଦେଖିପାରୁଛି । ତାଙ୍କର ପୂର୍ବପ୍ରକାଶିତ ''କ୍ୟାପିଟାଲିଆ ହଡ଼ା'' ପୁସ୍ତକଟି ରସିକ ପାଠକ ପାଠିକାଙ୍କୁ ଖୁବ୍ ଅମୋଦ ଦେଇଥିଲା । ଏବେ ଏହି ''ମଣିଷ ଭାଲୁ'' ପୁସ୍ତକର ପାଣ୍ଡୁଲିପିଟିର ସବୁ ରଚନା ପଢ଼ି ମୁଁ ଖୁବ୍ ଆମୋଦିତ ହୋଇଛି । ମୋର ଧାରଣା ହେଲା- ହାସ୍ୟ, ବ୍ୟଙ୍ଗ, ବିଦ୍ରୂପ ଶ୍ଳେଷ ଓ କୌତୁକାଦି ବ୍ୟାପାରରେ ତାଙ୍କର ସ୍ୱାଭାବିକ ବ୍ୟୁତ୍ପତ୍ତି ଓ ଗଭୀର ପ୍ରବେଶ ରହିଛି । ବ୍ୟକ୍ତି ଓ ସମାଜ ଜୀବନର ନାନାଦି ହାସ୍ୟକର ଅସଂଗତିକୁ ସେ ତନ୍ନ ତନ୍ନ କରି ଦେଖିଛନ୍ତି ଓ ସେଗୁଡ଼ିକୁ ସ୍ୱଚ୍ଛଳ କୌତୁକମୟ ଭାଷାଶୈଳୀରେ ପ୍ରକାଶ କରିଛନ୍ତି । ସବୁଠାରୁ ବଡ଼କଥା ହେଲା - ତାଙ୍କର ସରସ ଭାଷା ଶୈଳୀ ଓ କଳା କୌତୁକମୟ ବିଦଗ୍ଧ ବାକ୍ବିଳାସ । କୌଣସି ସ୍ଥଳରେ ଅଶ୍ଳୀଳତା ବା ନିର୍ଲଜ୍ଜତାର ଇଙ୍ଗିତ ମଧ୍ୟ ନାହିଁ । ବରଂ ଏକ ମାର୍ଜିତ ଭଦ୍ରଭବ୍ୟ ସୁରୁଚିପୂର୍ଣ୍ଣ ଅଭିବ୍ୟକ୍ତି ସର୍ବତ୍ର ସୁରକ୍ଷିତ ହୋଇ ରହିଛି । ବହୁ ହାସ୍ୟରସିକ ନାନାଦି ଅସଙ୍ଗତ ଅମାର୍ଜିତ ବାଚାଳତା ପ୍ରଦର୍ଶନ କରି ଇତରରୁଚିକୁ ଆମୋଦିତ କରିବାକୁ ଚେଷ୍ଟା କରିଥାନ୍ତି । ମାତ୍ର ଶ୍ରୀମାନ୍ ବଦ୍ରି, ଶବ୍ଦ ଓ ବାକ୍ୟ ପ୍ରୟୋଗରେ ଖୁବ୍ ସଂଯତ, ସଂହତ ଓ ପରିମିତ । ତାଙ୍କର ବ୍ୟଙ୍ଗ ବିଦ୍ରୂପ ପଥରେ କୌଣସି ବ୍ୟକ୍ତିଗତ ଆକ୍ରୋଶ ବା ପ୍ରତିକ୍ରିୟା ନାହିଁ । ନାହିଁ ମଧ୍ୟ କୌଣସି ଧରଣର ହୀନମନ୍ୟତା ବା ଲଘୁମନନର ବିକୃତି । ପ୍ରଚଳିତ ସମାଜର ଦୋଷ ଦୁର୍ବଳତା ଉପରେ ସେ ଚାବୁକ୍ ମାରିଛନ୍ତି- କିନ୍ତୁ କୌଣସି ସ୍ଥାନରେ ନିଷ୍ଠୁର କ୍ରୂର ହୃଦୟର ସ୍ପର୍ଶ ନାହିଁ । ବର୍ତ୍ତମାନ ଆମ ସମାଜରେ ରାଜନୀତି, ଧର୍ମ, ବାଣିଜ୍ୟ ଓ ସାହିତ୍ୟ ସଂସ୍କୃତିର ଯେଉଁ ଶୋଚନୀୟ ଅଧୋଗତି ଘଟିଛି ସେଥିପାଇଁ ସେ କେବଳ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷକୁ ଦାୟୀ କରି ନାହାନ୍ତି । ସମଗ୍ର ସାମାଜିକ ଓ ପାରିବାରିକ ବିଧିବ୍ୟବସ୍ଥାକୁ ଦାୟୀ କରିଛନ୍ତି । କାଳ ଉପରେ ଅକାଳର ସଂଘାତକୁ ଦାୟୀ କରିଛନ୍ତି । ସଂସ୍କୃତି ଉପରେ ଅପସଂସ୍କୃତିର ଆକ୍ରମଣକୁ ଦାୟୀ କରିଛନ୍ତି । ବ୍ୟକ୍ତି ଉପରେ ଦଳ ବା ସଂଘର ଅପପ୍ରଭାବକୁ ଦାୟୀ କରିଛନ୍ତି । ପ୍ରଗତି ବା ଅଗ୍ରଗତିର ବାହାନାରେ ବ୍ୟକ୍ତିର ଓ ସମାଜର ଅଧୋଗତି ବା ଅବକ୍ଷୟକୁ ହିଁ ଦାୟୀ କରିଛନ୍ତି । ଏହି ମନୋଭାବ ଓ ଏହି ଦୃଷ୍ଟିକୋଣର ଅଧିକାରୀ ହୋଇଥିବାରୁ ବଦ୍ରିମିଶ୍ରଙ୍କ ରଚନା ଗୁଡ଼ିକ ପଢ଼ିଲାବେଳେ ପାଠକ ପାଠିକା ହସୁଥାନ୍ତି ତ ନିଶ୍ଚୟ- ତା' ସହିତ ସେମାନଙ୍କ ମନରେ ଅନୁଶୋଚନାର ଭାବ ମଧ୍ୟ ଜାଗିଉଠେ । ସେମାନଙ୍କ ମନରେ ଉଚିତ ଅନୁଚିତ ଜାଣିବାପାଇଁ ଏକ ଅନୁସନ୍ଧିତ୍ସା ମଧ୍ୟ ଜାଗିଉଠେ, ଏହାହିଁ ଉଚ୍ଚାଙ୍ଗ ହାସ୍ୟବ୍ୟଙ୍ଗ ସାହିତ୍ୟର ସ୍ୱଧର୍ମ । ବଦ୍ରିଙ୍କ ଲେଖାରେ ଏହି ସୁଗୁଣଟି ସର୍ବତ୍ର ଫୁଟି ଉଠିଛି ।

ଏହି ପୁସ୍ତକରେ ସନ୍ନିବିଷ୍ଟ 'ମନ୍ତ୍ରୀଙ୍କ ଭାଗବତ ଟୁଙ୍ଗୀ', 'ଦେଶରଜାଙ୍କ ମଧ୍ୟାହ୍ନ ଭୋଜନ', 'ସ୍ତୁତିଚାରଣ କମିଟି', 'କରି ଦେ ଭିକାରୀ ମୋତେ' ପ୍ରଭୃତି ଗଳ୍ପରେ ସେ

ବର୍ତ୍ତମାନର କଳୁଷିତ ରାଜନୀତିକୁ ବ୍ୟଙ୍ଗବିଦ୍ରୂପ କରିଛନ୍ତି । 'ବାହାଘର ମାର୍କା ଘରପ୍ରତିଷ୍ଠା', 'ଜମିକିଣା ବ୍ୟାପାର' 'ଟୁଟୁବୋଉର ପାଦ' ପ୍ରଭୃତି ଗଳ୍ପରେ ସେ ବ୍ୟଙ୍ଗ କରିଛନ୍ତି ଆଧୁନିକ ଯୁଗର ବ୍ୟକ୍ତି-ମଣିଷ ଓ ସାମାଜିକ ମଣିଷର ଅସହାୟ ପତନକୁ ଏବଂ 'ମେଡ୍ ଇନ୍ ଇଣ୍ଡିଆ' ଗଳ୍ପରେ ସେ ସ୍ୱୟଂ ଯୁଗ ଓ କାଳର କୁଟୀଳ ଗତିକୁ ଓ ଅକାଳରା ମାରାତ୍ମକ ଆହ୍ୱାନକୁ ବ୍ୟଙ୍ଗ କରିଛନ୍ତି ଓ ବିଷର୍ଣ୍ଣ ଭ୍ରୂକୁଟୀ ପ୍ରଦର୍ଶନ କରିଛନ୍ତି ଏବଂ କହିବା ବାହୁଲ୍ୟ ଯେ, ଏହି ଗଳ୍ପଟି ତାଙ୍କର ଏହି ସଂକଳନର ସର୍ବଶ୍ରେଷ୍ଠ ଗଳ୍ପ ବା ରମ୍ୟରଚନା । କାରଣ, ଏହା କେବଳ ଏକ ବ୍ୟଙ୍ଗାତ୍ମକ ରଚନା ନୁହଁ- ଏହା ପଛରେ ରହିଛି ଜଣେ ମରମୀ ହୃଦୟବାନ ଲେଖକର ଗଭୀର ସର୍ଶକାତର ହୃଦୟର ଏକ କରୁଣ ବିଷାଦମୟ ଦୀର୍ଘଶ୍ୱାସ । ଶେଷରେ 'ମଣିଷଭାଲୁ' ଗଳ୍ପଟି ମଧ୍ୟ ଆଉ ଗୋଟିଏ ଦୃଷ୍ଟିରୁ ଖୁବ୍ ସାର୍ଥକ ରଚନା । ଏ ଗଳ୍ପରେ ମଧ୍ୟ ଲେଖକଙ୍କର ଶୋଚନାମୟ ଦୀର୍ଘଶ୍ୱାସ୍ ଝଡ଼ ପରି ଆମୂଳଚୂଳ ବହି ଚାଲିଛି । ଭାଲୁମାନେ ଥାଡି ଜଙ୍ଗଲରେ । ଭାଲୁ ଓ ମଣିଷ ଧରାଧରି ହେଲେ କେହି କାହାକୁ ସହଜରେ  ଛାଡନ୍ତି ନାହିଁ । ଯଦି ଦୁହିଁଙ୍କ ଧରାଧରି ଭିତରେ ଗଛଟିଏ ଥିବ ତେବେ କଥା ସରିଲା । ସେହିପରି ଯଦି ଦୁହେଁ ଜାକ ନଈ ସ୍ରୋତରେ ଧରାଧରି ହୋଇ ଭାସି ଯାଉଥିବେ, ତେବେ ବି କଥା ସରିଲା । ତଥାପି- ସେଇ ସବୁ ନିଦାରୁଣ ପରିସ୍ଥିତିରେ ମଧ୍ୟ ଭାଲୁ ହାତରୁ ମଣିଷ କଦାଚିତ୍ ଛାଡ଼୍ ପାଇଛି । ମାତ୍ର ମଣିଷଭାଲୁ ହାତରୁ ? ଥରେ ଜାବ ପଡ଼ିଲେ ମଣିଷ ମଲା । ଏଇ ମଣିଷ-ଭାଲୁମାନେ କୋଉଠି ଥାନ୍ତି ? କାହାକୁ ଆଶ୍ରା କରିଥାନ୍ତି ? ଶଂସିତ ଗଳ୍ପରେ ଏହି ମଣିଷ-ଭାଲୁ ମାନେ ଅଛନ୍ତି ବିଖ୍ୟାତ ଧର୍ମମନ୍ଦିରମାନଙ୍କରେ । ଏମାନେ ରାଜନୀତିରେ ଦାଦା କି ଟାଉଟର- ବଣିଜ ବେପାରରେ ପାଉଥା ଦଲାଲ- ସାହିତ୍ୟ ସଂସ୍କୃତିର କ୍ଷେତ୍ରରେ କୁହାଳିଆ- ଧର୍ମାଦିବ୍ୟାପାରରେ ପଣ୍ଡାପଡ଼ିଆରୀ ପୁରୋହିତଦଳ । ବଦ୍ରି ମିଶ୍ର ଏହି ଭାଲୁମାନଙ୍କୁ ଭଲକରି ଚିହ୍ନିଛନ୍ତି ଓ ତାଙ୍କର ପ୍ରତିଟି ଗଳ୍ପରେ ଆମକୁ ଚିହ୍ନାଇ ଦେଇଛନ୍ତି ।

ମୋଟ ଉପରେ ଶ୍ରୀମାନ୍ ବଦ୍ରିମିଶ୍ରଙ୍କ ପ୍ରତିଟି ଗଳ୍ପରେ ତାଙ୍କର ସରସ ସୃଜନୀ ପ୍ରତିଭାର ସୁବର୍ଣ୍ଣ ସର୍ଶ ଲାଗି ରହିଛି । ତାଙ୍କ ଲେଖାଗୁଡ଼ିକ ପଢ଼ିଲାବେଳେ ମନରେ ହର୍ଷ ଓ  ଆମୋଦ ଆନନ୍ଦର ଢ଼େଉ ଖେଳିଯାଏ । କିନ୍ତୁ ପଢ଼ିସାରିଲା ପରେ ସଚେତନ ମରମୀ ପାଠକ ପାଠିକାଙ୍କ ନାସିକାରୁ ବିଷାଦର ଏକ ଦୀର୍ଘଶ୍ୱାସ ମଧ୍ୟ ଅଜାଣତରେ ବାହାରି ଆସେ ।

ମୁଁ ମୋର ଏହି ନାତିପ୍ରତିମ ହସୁକୁଡ଼ା ଲେଖକଟିକୁ ମୋର ଗେଲ ଆଦର ଓ କଲ୍ୟାଣ ଜଣାଉଛି । ମୋର ଦୃଢ଼ ବିଶ୍ୱାସ, ଏହି ଗଳ୍ପ ଗୁଡ଼ିକ ଓଡ଼ିଆ ଓଡ଼ିଆଣୀଙ୍କ ଶୁଖିଲା ଖଡ୍‌ଖଡ୍ ହାଣ୍ଡି ମୁହଁ ଗୁଡ଼ିକରେ ସଜୀବ ହାସ୍ୟ ପରିହାସର ମଧୁର ଅମୃତ ଭରି ଦେବ ।

***ମହାପାତ୍ର ନୀଳମଣି ସାହୁ***

ତା ୨୩-୪-୯୭

୭୮୭ - 'ଆକାଶ ପାତାଳ'

ଶହୀଦନଗର, ଭୁବନେଶ୍ୱର

# ହୃଦୟର କଥା

''କ୍ୟାପିଟାଲିଆ ହଡ଼ା''ର ବ୍ୟାପକ ସଫଳତା ମୋର ନଥିଲା, ଥିଲା ସେହି ଅମଣିଷମାନଙ୍କର, ଯେଉଁମାନଙ୍କୁ ନିରିଖେଇ ଦେଖିବାରେ ମୋର କଲମ ଚାଲିପାରିଥିଲା । ପୁସ୍ତକର ପ୍ରକାଶନ ପରେ ମୋର ଅପ୍ରିୟ ସତ୍ୟ କହିବା ଓ ଲେଖିବା ନେଇ, ମୁଁ ଅନେକଙ୍କର ଘୃଣାର ପାତ୍ର ହୋଇଛି, ଅନେକ ନିନ୍ଦା ଶୁଣିଛି, ଅପଯଶ ଶୁଣିଛି, କିନ୍ତୁ ଭାଗ୍ୟ ଏହାକି, ମୁଁ ପଛେଇ ଯାଇନାହିଁ । ବରଂ ପୁଣି କିଛି ଅମଣିଷଙ୍କ ସଂସ୍ପର୍ଶରେ ଆସି, ଏ ବହି **ମଣିଷଭାଲୁକୁ** ପ୍ରକାଶ କରିବାର ସାହାସ ପାଉଛି । ହୃଦୟର କଥା ଲେଖିବା ଏକ ପ୍ରକାର ଧୃଷ୍ଟତା । ମାତ୍ର ନ ଲେଖିଲେ କୁଆଡ଼େ ପୁସ୍ତକଟି ପୂର୍ଣ୍ଣାଙ୍ଗ ହୁଏ ନାହିଁ । ଏ ଭୟରେ , ଏ ଦି'ପଦ ହୃଦୟର କଥା ।



ଶାସ୍ତ୍ର କଥା-

**''ସତ୍ୟଂ ବ୍ରୁୟାତ୍, ପ୍ରିୟଂ ବ୍ରୁୟାତ୍, ମା ବ୍ରୁୟାତ୍ ସତ୍ୟମପ୍ରିୟମ''**ର ନିର୍ଦ୍ଦେଶ- ଅପ୍ରିୟ ସତ୍ୟ କୁହନାହିଁକୁ ମାନିନେଲେ, ମୁଁ ଭାବେ ସମାଜ-ଦେଶ ପାଇଁ ଯଦି ମୋର କିଛି କର୍ତ୍ତବ୍ୟ ନାହିଁ, ତେବେ ମୋର ଜନ୍ମ କାହିଁକି ? ବହୁଥର, ମୁଁ ଏ ପ୍ରଶ୍ନର ଉତ୍ତର ଖୋଜିଛି, ମାତ୍ର ପାଇନି । ମନ୍ଦିର ତୋଳି ନପାରିଲେ ମଧ୍ୟ, ଆକାଶରେ ଉଡ଼ିନ ପାରିଲେ ମଧ୍ୟ, ବିଜ୍ଞାନ କ୍ଷେତ୍ରରେ ଭାରତବର୍ଷକୁ ବିଶ୍ୱରେ ପ୍ରଥମ କରି ନପାରିଲେ ମଧ୍ୟ, ଯଦି ମୋ ସାହିତ୍ୟରେ ଏକବିଂଶ ଶତାବ୍ଦୀର ଅମଣିଷ ମାନଙ୍କ ମଧ୍ୟରୁ ଏକ ଶତାଂଶ ମଣିଷ ହୁଅନ୍ତି, ତେବେ ତାହା ମୋ ଜନ୍ମର ସାର୍ଥକତା ନୁହେଁକି ?

ସଂସାର ଭିତରେ ଲେଖା ଲେଖି କରିବା, ପରିବାର ପ୍ରତି ଅବହେଳା ବୋଲି ଧରାଯାଉଥିଲେ ମଧ୍ୟ ମୋ ସ୍ତ୍ରୀ, ପିଲାଏ କେହି କେବେ ମୋତେ ଏ ନେଇ ବାଧା

ଦେଉନାହାଁନ୍ତି । ସଭିଏଁ ଉତ୍ସାହିତ କରିଛନ୍ତି । ସେ ଉତ୍ସାହ ଭିତରେ ସମାଜର ଗଳି-କନ୍ଦି ବୁଲି ବୁଲି, ମୁଁ ଦେଖୁଛି ସ୍ୱୀଗ ବୈଧବ୍ୟକୁ, କିଛି ନାରୀଙ୍କ ଦ୍ୱାରା ନିର୍ଯ୍ୟାତିତ ପୁରୁଷମାନଙ୍କୁ, ସାର୍ବଜନୀନ ଲାଞ୍ଚ ନେଉଥିବା, ତେଲମାରୁଥିବା ମଣିଷମାନଙ୍କୁ । ମୁଁ ଦେଖୁଛି ସାହିତ୍ୟ ବଣ୍ଟା ଯୋଜନାକୁ, ଧର୍ମାନୁଷ୍ଠାନରେ କିଛି ଯୁବକଙ୍କ ରାଜନୀତିକୁ, ଘରଚାଳର ବିଜ୍ଞପିତ ଦାରିଦ୍ର୍ୟକୁ, ବନ୍ୟାଞ୍ଚଳରେ ଯୋଡ଼ହସ୍ତ ହସକୁରା ନେତାଟିକୁ, ଧନୀ ହେବା ପାଇଁ ବ୍ୟାଙ୍କ ଆକାଉଣ୍ଟ କାଗଜକୁ ଖାଉଥିବା ଗାଈମାନଙ୍କୁ, ସ୍ତନରକ୍ଷା ପାଇଁ କୋମଳ ଛୁଆଟିକୁ ବୋତଲ ଧରାଇ ଦେଉଥିବା ମା'ମାନଙ୍କୁ, ମହାତ୍ମାଙ୍କ ଫଟୋ ତଳେ- ଧନୀ ଓ ନେତାଙ୍କ ପାଇଁ ତଦନ୍ତ କମିଶନ/ପ୍ରମାଣ ଅଭାବରୁ ଖଲାସର ରାୟ ଓ କ୍ଷୁଧାର୍ତ୍ତ ମଣିଷ ପାଇଁ କଠୋର ଦଣ୍ଡାଦେଶକୁ । ଅବଚେତନ ମନଭିତରେ ବେଳେ ବେଳେ ନିଜ ଭୋକ ପାଇଁ ବାଘର ପୋଷାକ ପିନ୍ଧି, ବାଘ ହୋଇଛି, ସମାଜର ଭୋକ ଜାଣିବାକୁ ଭିକାରୀ ହୋଇ, ଦାଣ୍ଡ କୁକୁରଙ୍କ ସହ ଗପିବାର ସୁଯୋଗ ମଧ୍ୟ ପାଇଛି । ବେଳେବେଳେ ହିଂସ୍ର ହୋଇ ଯାଇ, ମନର ଦ୍ରୁତଗାମୀ ଅଶ୍ୱର ଲଗାମ ଛାଡ଼ି, ମୁଁ ହୋଇ ଯାଇଛି ବେକାର ଯୁବକର ଏ.କେ. ୪୭ ଖୋଜାର ଅଭିପ୍ସା.... ବେଳେବେଳେ ଅହିଂସାର ଆଶ୍ରୟ ନେଇ, ମୁଁ ଦେଖୁଛି, ଦେଶାତ୍ମବୋଧ ନାମରେ, ଦେଶପାଇଁ ମିଛ ସତ୍ୟ ପାଠ ଭିତରେ ଅମଣିଷମାନଙ୍କ ସତ୍ୟପାଠ- ''ଗୁଣ୍ଡା ମୋ ଭାଇ, ଲାଞ୍ଚ ନେବା ମୋ ଧର୍ମ, ବଳାତ୍କାର ମୋ ଆଦର୍ଶ, ଭ୍ରଷ୍ଟାଚାର ମୋ ଜନ୍ମଗତ ଅଧିକାର'' । ସାହିତ୍ୟିକର ଚାଳିଶିଆ ଚଷମା ଫାଙ୍କରେ ମୁଁ ଦେଖୁଛି, କିଛି ଗାନ୍ଧିବାଦୀ ବଂଧୁଙ୍କ ବିଦେଶ ଋଣରେ ଜାରଜ ଅପସଂସ୍କୃତିକୁ, ଭାରତକୁ ଆମଦାନୀ । ନିର୍ବାଚନ ନାମରେ ହରିଜନ ବସ୍ତିରେ ଶହେ ଟଙ୍କାରେ ଓ ଶାସନୀ ଗାଁରେ ପାଞ୍ଚଶହ ଟଙ୍କାରେ ସ୍ୱାଧୀନତା ବିକ୍ରି । ବ୍ୟଙ୍ଗ ସାହିତ୍ୟର ଅକ୍ଷାଂଶ-



ଦ୍ରାଘିମାରେ ମୁଁ ଦେଖିଛି, ସଂସ୍କୃତି ଉପରେ ଅପସଂସ୍କୃତିର ଆକ୍ରମଣ ଓ ବିଶ୍ୱସୁନ୍ଦରୀ ପାଇଁ ଗାଁ-ସହର ମହିଳାଙ୍କ ଧାବମାନ ଅବସ୍ଥା......

ତଥାପି ରୋକି ପାରିନି,... କହି ପାରିନି । ଏ ନେଇ ଲେଖି ପାରିଛି ମାତ୍ର । ଏ ସଂକଳନ, ରବିନ୍ଦ୍ର ନାଥଙ୍କ 'ଗୀତାଞ୍ଜଳି' ବା ବଙ୍କିମଚନ୍ଦ୍ରଙ୍କ 'ଆନନ୍ଦ ମଠ' ହୋଇ ନପାରେ । ତଥାପି ବିଶ୍ୱାସ ଦିନେ ଓଡ଼ିଶାର ଯୁବଗୋଷ୍ଠୀ ମାନଙ୍କର ବ୍ୟଙ୍ଗ ସାହିତ୍ୟର ଆଗ୍ନେୟଗିରିରୁ ହଠାତ୍ ବିସ୍ଫୋରଣ ହେବ..... ପରମାଣୁ ବୋମା ଫୁଟି ଯିବ । ଦିନେ ଅଚେତନରୁ ସଚେତନ ହେବ ଏ ରାଷ୍ଟ୍ର ପୁରୁଷ, ନରପିଶାଚଙ୍କ କବଳରୁ ମୁକ୍ତି ପାଇବ ଏ ରାଷ୍ଟ୍ର, ସ୍ୱାଧୀନ ହେବ ଏ ଭାରତ, ଅମଣିଷରୁ ମଣିଷ ହେବେ ଅନେକ ।



ତେବେ କାହାଁନ୍ତି ସେ ଯୁବଗୋଷ୍ଠୀ !

କିଏ ବିପ୍ଳବର ନେତୃତ୍ୱ ନେବ !!

କିଏ ସ୍ୱାଧୀନତା ଆଣିବ !!!

ମୋ ଚିନ୍ତାରେ- ଶାଶ୍ୱତମୂଲ୍ୟ ନଥିଲେ, ମାନବିକ ସ୍ପର୍ଶ ନଥିଲେ, ଜୀବନର ତନ୍ତ୍ରୀକୁ ଝଙ୍କୃତ କରୁନଥିଲେ, 'ପୁସ୍ତକ' ନିର୍ଜୀବ କାଗଜ ହିଁ ହୁଏ, 'ସାହିତ୍ୟ' ହୁଏ ନାହିଁ । ମୋ '**ମଣିଷଭାଲୁ**' ଅମଣିଷମାନଙ୍କ ଜୀବନତନ୍ତ୍ରୀକୁ ଝଙ୍କୃତ କରିବ ନା ନାହିଁ ମୁଁ ବି ଜାଣେନା । ତେବେ ଚେଷ୍ଟା ଚଳାଇଛି ଓ ଶପଥ କରିଛି ଚେଷ୍ଟା ଚାଲୁରଖିବି ମୃତ୍ୟୁ ପର୍ଯ୍ୟନ୍ତ । ଏ ନେଇ ଦଣ୍ଡ ମିଳୁ, ନିର୍ଯ୍ୟାତନା ମିଳୁ, ବା ବନବାସ ମିଳୁ, ଦୁଃଖ ନାହିଁ ।

'ମଣିଷ ଭାଲୁ' ସଂକଳନର ପ୍ରକାଶନ ସମୟରେ ରମାପ୍ରେସ୍‌ର ସତ୍ତ୍ୱାଧିକାରୀ, ମୋର ବାଲ୍ୟବନ୍ଧୁ ଇଲାଚେନ୍ଦୁ ମହାନ୍ତିଙ୍କ ଅକୁଣ୍ଠ ସହଯୋଗ, ସଂକଳନର ଆରମ୍ଭରୁ ଶେଷଯାଏଁ ମୋ ସହ ଥିବା ମୋର ବାଲ୍ୟବନ୍ଧୁ ତଥା ନିର୍ଭିକ ସାଂବାଦିକ ଶ୍ରୀ କୁମାର ଶୁକ୍ଳା, ଶିବରାମ ପ୍ରଧାନ ଓ ସୁମିତ ବେହେରାଙ୍କ ନିଃସ୍ୱାର୍ଥ ସଦିଚ୍ଛା, ସଂକଳନ ସଂଶୋଧନ ଓ ନିର୍ଭୁଲତା ପାଇଁ ଅଗ୍ରଜ

ପୁରୁଷୋତ୍ତମ ମହାନ୍ତି, ବଂଧୁ ଶ୍ରୀକାନ୍ତ ମହାନ୍ତି, ଅନୁଜ ସରୋଜ ମହାନ୍ତି, ଶ୍ୟାମ ପ୍ରକାଶ ସେନାପତି ଓ ମୀନା ମହାପାତ୍ରଙ୍କ ସାହାଯ୍ୟ, ରମ୍ୟରଚନାର ସଫଳ ରୂପାୟନ ପାଇଁ ହିତାକାଂକ୍ଷୀ ତଥା ଓଡ଼ିଶାର ବରେଣ୍ୟ ବ୍ୟଙ୍ଗକଥାକାର ପୂଜ୍ୟ ମହାପାତ୍ର ନୀଳମଣି ସାହୁଙ୍କ ମୁଖବନ୍ଧ ସହ ମୋ ପାଣ୍ଡୁଲିପିରେ ନାଲିକଲମ ମରା, ଡଃ ସତ୍ୟନାରାୟଣ ରାଜଗୁରୁ, ଯେ ବହିର ସଫଳତା ପାଇଁ ତାଙ୍କର ଅମୂଲ୍ୟ ହାତକୁ ମୋ ମୁଣ୍ଡରେ ଥୋଇ ଦେଇ ବହି ଉନ୍ମୋଚନ ପୂର୍ବରୁ ଚାଲିଗଲେ, ଡଃ ସିଦ୍ଧେଶ୍ୱର ମହାପାତ୍ର (ଭାଇନା) ଔପନ୍ୟାସିକ ରାଧାମୋହନ ମହାପାତ୍ର, ବଂଧୁ ଗୌରାଙ୍ଗ ଚନ୍ଦ୍ର ମଲ୍ଲିକଙ୍କ ପ୍ରେରଣା ଓ ବିଶେଷଭାବେ ସଂକଳନର ପ୍ରଚ୍ଛଦ ଓ ଆଭ୍ୟନ୍ତରୀଣ ଅଳଙ୍କରଣ କରିଥିବା ଓଡ଼ିଶାର ସୁନାମଧନ୍ୟ ଶିଳ୍ପୀ ବଂଧୁ ଭରତ ଦାସ ଓ କିଶୋର ରଥ ତଥା ପୁସ୍ତକର ସମସ୍ତ ଦାୟିତ୍ୱ ମୁଣ୍ଡେଇଥିବା ଅନୁଜ ଦେବାଶିଷ ଦାସଙ୍କ ଶ୍ରମ ଓ ସାଧନା ଏବଂ ବିଶେଷତଃ 'ମଣିଷଭାଲୁ'ର ଚିନ୍ତା ଓ ଚେତନା ପାଇଁ ମୋର ଧର୍ମପତ୍ନୀଙ୍କ ଅନୁପ୍ରେରଣା ଠାରେ ମୁଁ ଋଣୀ, ଶେଷ ଜୀବନ ପର୍ଯ୍ୟନ୍ତ ।



ଆଶା, ପାଠକ ମାନେ ମୋର ଗଳ୍ପର ସମସ୍ତ ଚରିତ୍ର ଓ ଘଟଣାକୁ କାଳ୍ପନିକ ବୋଲି ଧରିନେବେ ଦଶ ମାସ ଦଶ ଦିନ ଗର୍ଭ ଯନ୍ତ୍ରଣା ସହି ଜନ୍ମକରିଥିବା ଏହି ସନ୍ତାନକୁ ଆଶୀର୍ବାଦ ଦେବେ ଓ ମୋର ଏ ଅପ୍ରିୟସତ୍ୟ ଲେଖା ପାଇଁ କ୍ଷମାପ୍ରଦାନ ପୂର୍ବକ, "**ମଣିଷଭାଲୁ**"ର କବଳରୁ ମଣିଷମାନଙ୍କୁ ରକ୍ଷା କରି, ମୋତେ ଅନ୍ୟ ଏକ ରମ୍ୟ ସଂକଳନ ପାଇଁ ଉତ୍ସାହିତ କରିବେ ।

**ବଦ୍ରି ମିଶ୍ର**

# ପୃଷ୍ଠାରେ



ଆଜିକାଲିକା ବଜାରରେ,ଦୁନିଆରେ,ସାଧୁମଣିଷ ଯେ ରାଜନୀତି କରିବାକୁ ମୁଣ୍ଡରେ ପାଗଭିଡ଼ିବ, ଏହା ବିସ୍ମୟ ନୁହେଁ କି ? ଏବେ ଯୁଆଡ଼େ ଯୁପଟକୁ ଟେକାଟେ ମାରିବ, ଶୂନ୍ୟରେ ଶୂନ୍ୟରେ ଯାଇ, ନିଶ୍ଚୟ କେଉଁ ରାଜନୀତିଆ ଅପରାଧୀଙ୍କ ଉପରେ ପଡ଼ିବ । ସମାଜ, ସମ୍ବାଦ, ଅନୁପମ ଭାରତ ଯେଉଁଥିରେ ପୃଷ୍ଠା ଓଲଟାଇବ, ପ୍ରତିପୃଷ୍ଠାରେ, ନିଶ୍ଚିତଥିବ ଦୁଇତିନୋଟି ନେତାଙ୍କ ଅପରାଧର କାହାଣୀ ବା ଦୁର୍ନୀତିର କାହାଣୀ । ଜେଲ୍ ଭିତରେ ରହି ନିର୍ବାଚନ ଲଢ଼ିବା, ହତ୍ୟା, ଗଣହତ୍ୟା, ଗଣଧର୍ଷଣ କରି ଦଳୀୟ ଟିକେଟ୍ ପାଇ ନିର୍ବାଚନ ଲଢ଼ିବା କିଛି ନେତାଙ୍କ ପାଇଁ ଆଜିକାଲିକା ରାଜନୀତିରେ ଧାରାବନ୍ଧା ହୋଇଗଲାଣି । ଏସବୁ ଦେଖାଦେଖି କିଛି ବେକାର ଯୁବକ, ଏହା ମଧ୍ୟରେ ଚାକିରୀ ବ୍ୟବସାୟରୁ ଆଶା ଛାଡ଼ି, ଏ ପାଞ୍ଚ ବର୍ଷିଆ କୋଟିପତି ଯୋଜନା କାର୍ଯ୍ୟକାରୀ କରିବାକୁ ଅଣ୍ଟାଭିଡ଼ି ବାହାରି ପଡ଼ିଲେଣି । ସିନେମା ଟିକେଟ୍ ବିକ୍ରି ବେଳେ ବ୍ଲାକରର ''ଦେଖ-ଦେଖ'' ଡାକରା ଓ ଲଟେରୀ ଟିକେଟ୍ ଦୋକାନରେ ''ଲଗା-ଲଗା'' ଡାକରାଠାରୁ, ନିର୍ବାଚନ ଘୋଷଣା ପରେ ପରେ ନେତାଙ୍କ ବିକଳ ଡାକ ''ଦିଅ-ଦିଅ''ର

ନିବେଦନ, ଖୁବ୍ ଶ୍ରୁତିମଧୁର ଲାଗେ । କିଏ କିଏ ଟିକେଟ୍ ପାଇବାପାଇଁ ନିଜର ସମର୍ଥକଙ୍କ ସହ ଡାକରା ଦିଅନ୍ତି- ''ଦିଅ-ଦିଅ, ଟିକେଟ୍ ଦିଅ, ଆମକୁ ଏ ଗରିବ, ଚାଷୀ, ଖଟିଖିଆ, ମୂଲିଆ, ମେହନତି ମଣିଷର ସେବା କରିବାର ସୁଯୋଗ ଦିଅ'' । ଆଉ କେହି, ଏ ଡାକରାକୁ ନରମାଇ, ଛାତିରୁ କୋହ ଉଠାଇ, ଆଖିରୁ ଲୁହ ଗଡ଼ାଇ କହନ୍ତି- ଖାଇବାକୁ ନ ପାଇ, ନିଜ ଦେହ ବିକୁଥିବା କଳାହାଣ୍ଡିର ସେ ନିଃସ୍ୱ ଭଉଣୀଟି ପାଇଁ, ବଞ୍ଚିବାର ରାହା ନ ପାଇ ନିଜ ଜନ୍ମିତ ଛୁଆକୁ ବିକୁଥିବା ବଲାଙ୍ଗୀରର ଭୋକିଲା ମାଆଟି ପାଇଁ, ମୋତେ ଥରେ ଚାନ୍ସ ଦିଅ । ଏସବୁ ଭିତରେ ଆଉ କେହି କେହି ଦମ୍ଭର ସହ ଡାକ ମାରନ୍ତି- ବର୍ଷ ବର୍ଷ ଧରି ଚିନି, ଟେଲିକମ୍, ଘର ଆବଣ୍ଟନ, ହାୱାଲା, ଲଖୁଲା, ଝାଡ଼ଖଣ୍ଡଲାରେ ସଂପୃକ୍ତ ଦୁର୍ନୀତିଆଙ୍କୁ ଚବିଶିଘଣ୍ଟାରେ ଜେଲ୍‌ରେ ଭର୍ତ୍ତି କରିବା ପାଇଁ ଟିକେଟ୍ ଦେଇ, ମୋ ହାତମୁଠା ଟାଣ କର । ନିର୍ବାଚନର ଏ ଟିକେଟ୍‌ବଣ୍ଟା ନିଲାମ୍ ଦେଖି ଟୋକାଏ କହନ୍ତି- ଟାଉଟର ଗୁଡ଼ାକ ମାରି ଖାଇବାର ଏକ ବିଧିବଦ୍ଧ ଯୋଜନା କରିଛନ୍ତି । ମାଇପେ କହନ୍ତି ଆମେ ତ ବର୍ଷସାରା ଭିକାରୀକୁ ଭିକ ଦେଉଛେ, ଆଉ ଏ ଗୁଡାକ ତ ପାଞ୍ଚବରଷକୁ ଥରେ ଭିକ ମାଗୁଛନ୍ତି । ଦୁଆରକୁ ଆସି ମାଗିଲେ କିଏ ଫେରାଇ ଦେବ ଯେ ? ଏସବୁ ଦେଖି ଶୁଣି ବୁଢ଼ାଏ କହନ୍ତି- ହଃ...ହେ.... ଦେଶ ସ୍ୱାଧୀନ ପରଠାରୁ ଏମିତି ସଭିଏଁ ପ୍ରତିଶ୍ରୁତିରେ ପେଟ କରିଦିଅନ୍ତି । ଯାହାହେଉ କିଛି ନ ହେଲା ବେଳକୁ ସଭା-ସମିତି, ଦୂରଦର୍ଶନରେ ତ ଆମକୁ ନେତାଙ୍କ ହସ ହସ ନମସ୍କାର ଟେ ମିଳୁଛି । ନିଅନ୍ତୁ, ଜିତନ୍ତୁ, କିଏ କ'ଣ ଟେକି ଦେଇଥିଲା ଯେ, ଯେ ନ ଟେକିବେ ବୋଲି ଚିନ୍ତା !!

ଏସବୁ କୁହାକୋହି, ଦେଖା-ଦେଖି, ଶୁଣା-ଶୁଣି ଭିତରେ, ଆମ ଗାଁରେ କିନ୍ତୁ, ଏକ ନୂଆ ଝଲକ ଦିଶିଲା । ଯେଉଁଦିନ ଏ ଦୂଷିତନେତା ବହୁଳ ପରିବେଶକୁ ନଷ୍ଟ କରି, ଆମ ଗାଁ ଭଜହରି ଜେଜେଙ୍କ କଲେଜ ପଢୁଆ ପୁଅ ନରିଆ, ଗାଁ ପୋଖରୀରୁ ଦଳ କାଢ଼ିଲା, ରାସ୍ତାକୁ ମୁଣ୍ଡରେ ମାଟି ବୋହିଲା । ସେଦିନ ଗାଁ ଲୋକେ ରାତିରେ ଭାଗବତଟୁଙ୍ଗୀ ଘରେ କୁହାକୋହି ହେଲେ-ଦେଖିବ, ଦିନେ ଆମ ନରିଆ, ମନ୍ତ୍ରୀ ହେବ । ଆମ ଗାଁର ନାଁ ରଖିବ । ଚାହୁଁ ଚାହୁଁ ଆସିଗଲା ନିର୍ବାଚନ । ପ୍ରାର୍ଥୀପତ୍ର ଦାଖଲର ପୂର୍ବଦିନ ରାତିରେ ପାଖ ଆଖ ଚବିଶିଖଣ୍ଡ ଗାଁର ଲୋକେ ଭାଗବତଟୁଙ୍ଗୀଠାରେ ଏକାଠି ହୋଇ ନିଷ୍ପତ୍ତି କରି ନରିଆକୁ ସର୍ବସମ୍ମତ ସରପଞ୍ଚ ଘୋଷଣା କଲେ । ନରିଆ ସରପଞ୍ଚ ହେବା ପରଦିନ ହିଁ ବଦଳି ଗଲା ଗାଁର ମାଟି ରାସ୍ତା, ପୋଖରୀ ତୁଠ । ସରକାରବାହାଦୁରଙ୍କ ସହ ସଂଗ୍ରାମ କରି, ନରିଆ ଯୋଜନାରୁ ଅର୍ଥ ଆଣି, ସ୍କୁଲ ଘରମାନଙ୍କରେ ଆଜବେଷ୍ଟସ୍, ପୋଖରୀ ତୁଠରେ ସିମେଣ୍ଟ ଲଗାଇଲା । ରାସ୍ତାରେ ମୋରମ ପକାଇଲା । ଦିନେ ସରପଞ୍ଚଙ୍କ ଅବାରିତ ଉଦ୍ୟମରେ ଚବିଶିଖଣ୍ଡ ଗାଁର ଭାଗବତଟୁଙ୍ଗୀ ପୁନରୁଦ୍ଧାର ହେଲା । ଏଣିକି ପ୍ରତିଦିନ

ସଂଳରେ ଗାଁର ନିରୋଳା ପରିବେଶରେ ପ୍ରତିଧ୍ୱନିତ ହେଲା ଜଗନ୍ନାଥ ଦାଶଙ୍କ ଭାଗବତ । ସରପଞ୍ଚ ହେବାଠାରୁ, କାନ୍ଧରେ ଝୁଲାବ୍ୟାଗ୍, ହାତରେ ଡାଇରୀ ଧରି ନରିଆ ଗାଁକୁ ଗାଁ, ହିଡ଼େ ହିଡ଼େ ବୁଲିଲା । ଚବିଶିଖଣ୍ଡ ଗାଁ ଲୋକଙ୍କ ଆଶୀର୍ବାଦରୁ ଦିନେ ସରପଞ୍ଚ ନରିଆରୁ ବ୍ଲକ ଅଧ୍ୟକ୍ଷ ହୋଇଗଲେ ନରିବାବୁ । ଧନ୍ୟ ହୋଇଗଲା ଗାଁ ମାଟି । ଏଣିକି ଗାଁକୁ ଜିପ୍ ଆସିଲା । ମନ୍ତ୍ରୀ ଆସିଲେ, ଭାଗବତ ଟୁଙ୍ଗୀରେ ବସି ମନ୍ଦିର ନିର୍ମାଣ, ଶିଳ୍ପ ଗଠନ, ସୁଧ ଛାଡ଼, ଋଣ ଛାଡ଼, ଜଳଯୋଗାଣ ଇତ୍ୟାଦିର ଶହ ଶହ ପ୍ରତିଶ୍ରୁତି ଦେଲେ । ଦିନେ ହଜାର ହଜାର ଲୋକଙ୍କ ସଦିଚ୍ଛାରୁ, ବିଶ୍ୱାସରୁ ନରିବାବୁ ହେଲେ ଆମ ଅଞ୍ଚଳର ବିଧାୟକ । ଦିନେ, ନିଜ ଅଞ୍ଚଳରେ ବିଜୁଳି ଯୋଗାଣ, ଜଳ ଯୋଗାଣ, ପୋଲ ନିର୍ମାଣ, କୂପ ଖନନ ସହ ଅନ୍ୟ ଅଞ୍ଚଳର ଅନାହାର ମୃତ୍ୟୁ ଓ ଗଣଧର୍ଷଣ ଉପରେ ତଦନ୍ତ ଦାବୀରେ ବିଧାନସଭାକୁ ଥରାଇ ଦେଲେ ମହାମାନ୍ୟ ନରସିଂହ ବାବୁ । ଦୂରଦର୍ଶନର ସିଧାପ୍ରସାରଣରେ, କବିତାପାଠ, ମୁଠ ମରାମରି, ଧରା-ଧରି, ଦୃଶ୍ୟ ଭିତରୁ ନରସିଂହବାବୁଙ୍କ ମାଇକ୍ ଭଂଗା, ଟେବୁଲ୍ ନଚା ଦେଖି କୃତ୍ୟ କୃତ୍ୟ ହୋଇଗଲେ ଗାଁ ବାଲାଏ । ବିଧାୟକ ହେବାର ବର୍ଷେ ନ ଯାଉଣୁ ବିଧାୟକରୁ ମନ୍ତ୍ରୀ ହୋଇଗଲେ ନରସିଂହ ସାହେବ । ଖୁସିରେ ଫାଟି ପଡ଼ିଲା ଗାଁ ମାଟି । ମନ୍ତ୍ରୀ ପଦର ଗୋପନୀୟତା ଓ ଦେଶନାମରେ ଶପଥପାଠ କରିବା ସହ ତାଙ୍କୁ ମିଳିଗଲା, ରାଜପଥର ଚିକି ମିକି କ୍ୱାଟର, ମିଳିଗଲା ନାଲିବତୀଲଗା ଗାଡ଼ି । ରାତାରାତି ତିଆରି ହେଲା ଇନ୍, ନାମ ଫଳକ ଓ ସାକ୍ଷାତ ନେଇ ସମୟ-ଫଳକ । ପରଦିନ, ଗାଁକୁ ଆସି ଭାଗବତଟୁଙ୍ଗୀ ପାର୍ଶ୍ୱ ସାମିଆନା ଘେରା ସଭାମଣ୍ଡପରେ ଭାଗବତ ପାରାୟଣକୁ ଉଦ୍‌ଘାଟନ କଲେ ମନ୍ତ୍ରୀ । ପରେ ଆବାଳ-ବୃଦ୍ଧବନିତା ଗାଁ ପୁଅ ବେକରେ ଫୁଲମାଳ ମାନ ପକାଇଲେ । ଗାଁ ମାଇପିଏ ହୁଳ ହୁଳି ଦେଲେ । ସଭାର ସଭାପତି ବୟୋବୃଦ୍ଧ କାଶୀଡିଆଡ଼ିଏ ଧନ୍ୟବାଦ ଅର୍ପଣକୁ ଭାଗବତ ମାଧ୍ୟମରେ ପାଠକଲେ-

''ନିର୍ଭୟ ହୁଅ ନରସିଂହ, ବଜ୍ର ତୋ ହେଉ ସର୍ବଅଂଗ
ଆମ୍ଭର ଆୟୁ ତୋତେ ହେଉ, ଆୟୁଷ ଚୀରକାଳ ରହୁ ।
ତୁ ଅଟୁ ମହତ ପୁରୁଷ,ସଂସାରେ ଅଛି ତୋର ଯଶ
ତୁ ସର୍ବ ପୁରୁଷ ମହତ, ଏ ଆମ୍ଭ ତିନିବାର ସତ୍ୟ ।।

ଧନ୍ୟ ଧନ୍ୟ, ବାଃ ବାଃ, କରତାଳିରେ କମ୍ପିଉଠିଲା ଗାଁମାଟି, ଧନ୍ୟ ହୋଇଗଲେ ମନ୍ତ୍ରୀ, ଗାଁ ଲୋକେ ଓ ସାର୍ଥକ ହୋଇଗଲା ଭାଗବତଟୁଙ୍ଗୀ ।

ଉଦ୍‌ଘାଟନ, ପଥରସ୍ଥାପନ, ପଥରଖୋଦନ, ପଥର ଲଗାଣ, ପଇଡ଼ ଭଂଗାଣ, ରିବନ୍ କଟାଣ, ଇତ୍ୟାଦି ସହ ସଭା-ସମିତିରେ ଭାଷଣ-ଅଭିଭାଷଣ ଦେଇ ଦେଇ ଗାଁଠାରୁ

ଦୂରେଇ ଗଲେ ସାହେବ । ଦିନେ, ରାତିରେ ଭାଗବତଟୁଙ୍ଗୀରେ ସଭା ବସିଲା । ଗାଁର ବିଧାଦଳିଆ ଟୋକାମାନେ କହିଲେ- ନରିରୁ ନରିବାବୁ, ନରିବାବୁରୁ ନରସିଂହ ସାହେବ ହୋଇ, ମନ୍ତ୍ରୀ ଭୁଲିଗଲେ ଗାଁ ମାଟି । ଆରେ ଟି.ଭି.ରେ ଶୁଣୁନ- ''ଶହେକେ ଅଶୀ ବେଇମାନ, ତଥାପି ଏ ଦେଶ ମହାନ୍ ।'' ବିଧାଦଳିଆଙ୍କ ବିଷୋଦ୍‌ଗାରରେ ବାଡ଼ବତା ଦେଇ ସର୍କାରାଦଳିଆ କହିଲେ- ଆରେ, ଆଜି ଆମ ନରିଆ ଆଖିରେ ସାରା ଓଡ଼ିଶାର ଦୃଶ୍ୟ । ମରୁଡ଼ି, ଘରପୋଡ଼ି ଇତ୍ୟାଦି ଓଡ଼ିଶାର ହଜାର ହଜାର ଗାଁର, କୋଟି କୋଟି ଦୁଃଖ ତା'ର ଦୁଃଖ । ଏକା କେତେ କରିବ ?

ସତକୁ ସତ ଦିନେ ଜାତୀୟସଂହତି, ଗ୍ରାମ୍ୟବିକାଶ ଓ ସହର ଉନ୍ନୟନର ଅମୃତସନ୍ତାନ ଭାବେ ସମ୍ମାନୀତ ହେଲେ ସାହେବ । କେବଳ ଓଡ଼ିଶାରେ ନୁହେଁ, ଦିନେ ନୂଆଦିଲ୍ଲୀରୁ ଉଡାଜାହାଜ, ତାଙ୍କୁ ସମ୍ମାନ ଦେବା ପାଇଁ ବୋହିନେଲା ବିଦେଶ ମାଟିକୁ । ଚୀନ୍, ମସ୍କୋ, ମରିସସ୍ ସବୁଠାରେ ସେ ପାଇଲେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା । ସମ୍ବର୍ଦ୍ଧନାର ପ୍ରତିଉତ୍ତର ଦେବାକୁ ଯାଇ ସାହେବ, ବିଦେଶ ମାଟିରେ ଓଡ଼ିଆ ଘରର ଭାଗବତ ପାଠ କଲେ-

''ମୋ ପାଦ ପୂଜାର ବିଧାନ, ଯେ ହୋଇଥାନ୍ତି ସାବଧାନ
ଜନ୍ମମରଣ ତାଙ୍କ ନାହିଁ. ଏମନ୍ତ ପ୍ରଭୁ ଭାବଗ୍ରାହୀ ।
ମଞ୍ଚେ ହୋଇଛି ମୁହିଁ ଜାତ, ଜଗତେ ହୋଇବି ବିଖ୍ୟାତ
ଲୋକେ କରିବେ ମୋତେ ପୂଜା, ଅନେକ ଦେବେ ବଳିଭୋଜା ।।

ସାହେବଙ୍କ ଭାଗବତ ଅର୍ଥର ମାର୍ମିକ ଅନୁବାଦ ଶୁଣି ମନ୍ତ୍ରମୁଗ୍ଧ ହୋଇଗଲେ ବିଦେଶ ଦର୍ଶକ । ମନ୍ତ୍ରୀ ପାଇଲେ 'ଭାଗବତ ପୁରଷ' ସମ୍ମାନ । ଦୂରଦର୍ଶନରେ ମନ୍ତ୍ରୀଙ୍କୁ ସମ୍ବର୍ଦ୍ଧନା, ତୋପ ଫୁଟା ଓ ବିଗୁଲ୍‌ବଜା, ଗାଁର ଟି.ଭି. ଦେଖା ଦର୍ଶକମାନଙ୍କୁ ବିମୋହିତ କଲା । ହଠାତ୍ ମନ୍ତ୍ରୀ ବିଦେଶରେ ଥିବା ବେଳେ ବିରୋଧିଦଳ ପକ୍ଷରୁ ତାଙ୍କ ନାମରେ କୋଟି କୋଟି ଟଙ୍କା ଦୁର୍ନୀତି, ଟିକସ ଫାଙ୍କି, ଯୌନ ଧର୍ଷଣର ସମ୍ବାଦ ପ୍ରକାଶ ପାଇଲା । ପରେ ପରେ ଜବତ ହେଲା, ମନ୍ତ୍ରୀଙ୍କ କେରଳର ନଡ଼ିଆଫାର୍ମ, ଆସାମର ଚାହାବଗିଚା, ଦିଲ୍ଲୀ ଓ ଉଟିର ମାର୍ବଲ କୋଠା, କ୍ୟାସ୍ ସାର୍ଟିଫିକେଟ୍ ଓ ଲକରର ସୁନା । ଗାଁରେ ବିଧାଦଳିଆ ଫୁସ୍ ଫାସ୍ ହେଲେ- ହଇଓ, ଅମୃତ ଭିତରେ ପୁଣି ବିଷ ! ଶେଷକୁ ପୁଣି ଜେଲ୍ ଯୋଗଥିଲା ?? ରାତିରେ ଭାଗବତ ଟୁଙ୍ଗୀରେ ସଭା ବସିଲା । ବିଧାଦଳିଆଙ୍କ କଥାକୁ ମିଛବୋଲି ଘୋଷଣା କରି ସର୍କାରାଦଳିଆ କହିଲେ- ଆମେ ବିଦେଶ ସହ ଯୋଗାଯୋଗ କରିଥିଲୁ । ମନ୍ତ୍ରୀ କହିଲେ- ବିଦେଶ ଯିବା ପୂର୍ବରୁ ସେ ତାଙ୍କର ସମସ୍ତ ସ୍ଥାବର-ଅସ୍ଥାବର ସମ୍ପତ୍ତିକୁ ଜାତୀୟ ସଂପତ୍ତି ଭାବେ ଘୋଷଣା କରିଛନ୍ତି । ଆଉ ଧର୍ଷଣ କଥା । ମନ୍ତ୍ରୀ କହିଛନ୍ତି,

ସେ ସବୁ ପୋଗ୍ରାମ୍ କାଣ୍ଡ ଛାଟ୍ କରି ଫେରୁଛନ୍ତି । ଏ ନେଇ କମିଶନ ବସିବ । ଦିନେ ସତ୍ୟ ପଦାକୁ ବାହାରି ଆସିବ । ସେତେବେଳେ ଦେଖିବ ଆମ ନରି କିପରି ଗଙ୍ଗାଠାରୁ ପବିତ୍ର । ଆରେ ଭାଗବତ ରସ ପିଇ ଯେ ମଣିଷ, ଭାଗବତଟୁଙ୍ଗୀ ଘରୁ ଯେ ମନ୍ତ୍ରୀ, ତା ଦେହରେ ପୁଣି କଳଙ୍କ !!!

କିନ୍ତୁ ସମସ୍ତଙ୍କୁ ଶୋକ ସାଗରରେ ଭସାଇ, ସେଦିନ ମଧ୍ୟରାତ୍ରୀରେ ଏକ ସ୍ୱତନ୍ତ୍ର ବୁଲେଟିନ୍ ମାଧ୍ୟମରେ ମନ୍ତ୍ରୀଙ୍କ ମୃତ୍ୟୁ ଖବର ପ୍ରଚାରିତ ହେଲା । ନୀରବ ହୋଇଗଲା ଗାଁ ମାଟି । କଳାରେ ଛାଇ ହୋଇଗଲା ଗାଁ ମଣିଷଙ୍କ ମୁହଁ । ଦୁଆର ପଡ଼ିଗଲା ଭାଗବତଟୁଙ୍ଗୀର । ପାହାନ୍ତା ପ୍ରହରରେ ବିଧାଦଳିଆ ପ୍ରଚାର କଲେ- ନରି, ଜେଲ୍‌ଯିବା ଭୟରେ ବିଷ ପିଇ ଆତ୍ମହତ୍ୟା କରିଛି । ରାତିରେ ଭାଗବତଟୁଙ୍ଗୀରେ ଗାଁର ଜରୁରୀ ସଭା ଡକା ହେଲା । ସର୍କାରାଦଳିଆ କହିଲେ- ମନ୍ତ୍ରୀ ବିଷ ପିଇ ମରିବା କପୋଳକଳ୍ପିତ । ଏହା ବିରୋଧୀଦଳିଆଙ୍କ ଏକ ଅପପ୍ରଚାର । ଅନ୍ୟାୟ ସହି ନପାରି ବିଚରା ନରିର ହାର୍ଟଫେଲ୍ ହୋଇଗଲା ।

ସକାଳୁ ସକାଳୁ ଟି.ଭି.ରେ ମନ୍ତ୍ରୀଙ୍କ ମୃତ୍ୟୁକାଳୀନ ଦୃଶ୍ୟ ସହ ଶେଷଚିଠି ପାଠ କରାଗଲା । ମନ୍ତ୍ରୀ ଲେଖିଯାଇଥିଲେ- ଗାଁର ମାଟି, ପାଣି, ପବନ ଓ ମଣିଷଙ୍କଠାରେ ମୁଁ ଚିର ଋଣୀ । ମୋର ଯଦି କେବେ ଅସତ୍ୟ, ଅନ୍ୟାୟ ସହିନପାରି ଆକସ୍ମିକ ମୃତ୍ୟୁ ହୁଏ, ତେବେ ମୋର ଚିତାଭସ୍ମକୁ ମୋ ଗାଁ ମାଟିରେ ବିଞ୍ଚିଦେବ । ଗାଁ ଭାଗବତଟୁଙ୍ଗୀରେ ମୋ ନାଁରେ ଦୀପଟିଏ ଜାଳି ଦେବ । ସେଥିରେ ମୋର ଶାନ୍ତି ଓ ମୁକ୍ତି । ମନ୍ତ୍ରୀ ଓରଫ୍ ନରସିଂହ ସାହେବ ଓରଫ୍ ନରିର ଚିଠି ଶୁଣି, ବାହୁନି କାନ୍ଦିଲେ ଗାଁବାଲାଏ । ସେହି ମୁହୂର୍ତ୍ତରେ ଆରମ୍ଭ ହେଲା, ଶୋକ ଦିବସ, ଶୋକବାର୍ତ୍ତା, ଶୋକସଭା, ଶୋକ ସମ୍ବାଦ- ''ସେ ଜଣେ ଗୁଣୀ, ମାନୀ,କର୍ମଠ ତଥା ଧର୍ମାନୁରାଗୀ ଜନନେତା ଥିଲେ'' । ପରଦିନ ବ୍ୟୋମଯାନ ଯୋଗେ, ମନ୍ତ୍ରୀଙ୍କ ଚିତାଭସ୍ମକୁ ସାରା ଗାଁରେ ଉଡାଇ ଦିଆଗଲା । ସେ ବର୍ଷ ଗାଁ ବିଲରେ ଦେଖାଦେଲା ସୁନାକେଣ୍ଡାର ଧାନ ।

ଉପନିର୍ବାଚନ ଘୋଷଣା ପୂର୍ବରୁ ବହୁ ନେତାଏ ଗାଁକୁ ଆସି, ମନ୍ତ୍ରୀଙ୍କ ଚିରସାଥୀ ଭାଗବତଟୁଙ୍ଗୀ ନିକଟରେ ତାଙ୍କର ପ୍ରତିମୂର୍ତ୍ତି ସ୍ଥାପନ କଲେ । ମନ୍ତ୍ରୀଙ୍କୁ ସମ୍ମାନ ଦେଇ, ରାଜଧାନୀର ଏକ ରାସ୍ତାର ନାମ ନରିସାହେବ ଲେନ୍ ହେଲା । ଘୋଷଣାହେଲା ଉପନିର୍ବାଚନ । ଗାଁ ଲୋକେ ସ୍ୱର୍ଗୀୟ ନରିଆ ଓରଫ୍ ନରିସାହେବଙ୍କ ଭଙ୍ଗା ଚାଳିଆ ତଳେ ସମାବେଶ ହେଲେ । ଲୋକଙ୍କ ବିକଳ ଡ଼ାକରେ ଘରୁ ଗୋଡ଼ କାଢ଼ିଲେ କଦମ୍ବ ଦେଇ । ସମାବେଶରେ ସଭାପତିତ୍ୱ କରି କାଶୀ ତିଆଡ଼ିଏ କହିଲେ- ସୃଷ୍ଟିରେ ଯେପରି ସତ୍‌ପୁରୁଷ

ଆସିବା ବେଳେ ଆକାଶ ନିର୍ମଳ ଦିଶେ, ପକ୍ଷୀମାନେ ରାବ ଦିଅନ୍ତି, ସେଭଳି ଆଜିର ଦିନର ଅବସ୍ଥା । ଭାଗବତ କହେ-

ନିର୍ମଳ ଦିଶିଲା ଗଗନ,ମହୀମଣ୍ଡଳ ବିଦ୍ୟମାନ
ନଦୀଏ ଉଚ୍ଛୁଳିଲେ ଜଳେ, ପକ୍ଷୀଙ୍କ ରାବ ବୃକ୍ଷଡ଼ାଳେ ॥

ପରଲୋକ ଗତ ନରି, ମଣିଷ ନଥିଲା, ଥିଲା ଦେବତା । ଭାଗବତ ଓ ଭାଗବତଟୁଙ୍ଗୀର ପୁନରୁଦ୍ଧାର ପାଇଁ ସେ ଆଜି ଅମର ହୋଇଗଲା । ଭାଗବତ କହେ-

''ସତ୍ୟେ ତୁ ପାଳୁ ବସୁନ୍ଧରୀ, ତୋର ଭିଆଣ ନରହରି
ତୋହର ଆଦିଅନ୍ତ ନାହିଁ, ପ୍ରକୃତି ତାହା ନ ଜାଣଇ
ସାଧୁଙ୍କ ମଧ୍ୟେ ତୁହି ସାଧୁ, ତରିଲୁ ସଂସାର ପ୍ରମାଦୁ
ତୋତେ ନପାଇ ନରହରି, ଭ୍ରମୁଛୁ ତୋ ମାୟା ଆବୋରି ।
ପାଇଲେ ତୋ ନରମ ପାଦ, ଖଣ୍ଡ ଯେ ବିଷୟା-ବିଷାଦ
ତୋର ମହିମା ଗୁଣ ଗୁଣି, କରି ନ ପାରେ ଚକ୍ରପାଣି ॥

ନରିସାହେବଙ୍କ ମୃତ ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଦେଉ ଦେଉ, ସବୁଦଳିଆ ଲୋକେ କହିଲେ- ''ଆମର କିଛି ଦରକାର ନାହିଁ ମା, ଆମେ କେବଳ ଆପଣଙ୍କ ଆଖିରେ ସାହେବଙ୍କୁ ଦେଖିବାକୁ ଚାହୁଁ'' ।

ଭାଗବତଟୁଙ୍ଗୀ ନିକଟରେ ମନ୍ତ୍ରୀଙ୍କ ପ୍ରତିମୂର୍ତ୍ତି ଯେପରି ହସି ଉଠୁଥିଲା । ମନ୍ତ୍ରୀଙ୍କ ନିର୍ଜୀବ ପ୍ରତିମୂର୍ତ୍ତି ଯେପରି ଗାଉଥିଲା-

''ମୋହର ପ୍ରସଙ୍ଗ ବିଧାନ, ହେଲେ ତରନ୍ତି ତିନଜଣ,
ଶ୍ରୋତା, ବକ୍ତା, ଯେ ପଚାରି, ଏ ତିନିଜଣ ଯାଚି ତରି,
କରି କରାଉ ଥାଏ ମୁହିଁ, ମୋ ବିନୁ ଅନ୍ୟଗତି ନାହିଁ'' ।





ସହରର ନାଟକ, ସଂଗୀତ, ରଂଗମଞ୍ଚ ଗୁଡ଼ାକ ମରିହଜି ଯାଉଥିବା ବେଳେ, ସାହିର ଦପେ କଲେଜ ପଢୁଆ ବାନାଟୋକା, ବେହୋସ୍ ହୋଇ ଯାଉଥିବା ସାହିତ୍ୟ ମୁହଁରେ ଅକ୍ସିଜେନ୍ ଲଗାଇ, ତାକୁ ମଲା ମୁହଁରୁ ବଞ୍ଚାଇ ଦେଲେ । ସାହିତ୍ୟର ଏ ମରୁଡ଼ିଆ ଅବସ୍ଥାକୁ ଉପଲବ୍ଧି କରି, ହତାଶ କବି ସଦାନନ୍ଦ ମିଶ୍ର, ନିଜର କଂକାଳ ସାର ଦେହର ମାଂସପେଶୀକୁ ଫୁଲାଇ କହିଲେ- ''ଆମେ ସାହିତ୍ୟକୁ ଏଭଳି ମରିବାକୁ ଦେବା ନାହିଁ । ଜାତିରକ୍ଷା, ଭାଷାରକ୍ଷା, ଦେଶରକ୍ଷା ଓ ସଂସ୍କୃତିରକ୍ଷା ପାଇଁ, ଦେଶରେ ଆଜି ଆମ ସାହିତ୍ୟର ଖାସ୍ ଆବଶ୍ୟକତା ପଡ଼ିଛି । ଦେଖିବେ, ଦିନେ ଏ ଓଡ଼ିଆ ସାହିତ୍ୟ, ଦେଶର ଆର୍ଥିକ ମାନଦଣ୍ଡ ବଦଳାଇ ଦେବ, ଭିକମଗା ଦୁଃଖି ମଣିଷ ମୁହଁରେ ହସ ଫୁଟାଇବ, କ୍ୟାନସର, ଏଡ଼ସ୍ ଭଳି ମାରାତ୍ମକ ରୋଗୀକୁ ବଞ୍ଚିବାର ଖୋରାକ ଯୋଗାଇବ ।'' ଟୋକା-ଟୋକେଳିଆଙ୍କ ସାହିତ୍ୟ ରକ୍ଷା ପାଇଁ ଏଭଳି ଉତ୍ସାହ, ଉଦ୍ଦୀପନା, ଉତ୍ତେଜନା ଦେଖି ତେଲିଆ ଗଳ୍ପକାର ବିଶ୍ୱମୋହନ ବାବୁ କହିଲେ- ''ଖାଲି କଥାରେ ପେଟ ପୂରିବ ନାହିଁ, ଆମକୁ ସାହିତ୍ୟ ରକ୍ଷା ପାଇଁ ପୁସ୍ତକ ମେଳାଟିଏ କରିବାକୁ ପଡ଼ିବ । କିଛି ଶିଳ୍ପପତିଙ୍କୁ

ଏଥିରେ ସାମିଲ୍ କରାଇ, ରୁଗ୍ଣ ଓଡ଼ିଆ ସାହିତ୍ୟକୁ ଖାଦ୍ୟ-ପେୟ ଦେଇ ପ୍ରଥମେ ସୁସ୍ଥ କରିବାକୁ ପଡ଼ିବ ।'' 'ସାହିତ୍ୟରକ୍ଷା' ଶୀର୍ଷକ ଆଲୋଚନାରେ ଅଂଶଗ୍ରହଣ କରି 'ମରୁବାଲି'ର ସଂପାଦକ ତଥା ମାରଣା ଗାଳ୍ପିକ ସାର୍ଥକ ବାବୁ କହିଲେ- ''ସାହିତ୍ୟକଙ୍କୁ ଖାଦ୍ୟ-ପେୟ ଦେଇ ସୁସ୍ଥ କରିଦେଲେ ସାହିତ୍ୟଟା ବଞ୍ଚି ଯିବନି । ବୁଢ଼ାହଡ଼ାଙ୍କୁ ହଟାଇ, ପ୍ରଥମେ କିଛି ଯୁବ ସାହିତ୍ୟିଙ୍କୁ ଦେବା-ଦିଆଇବା ଭଳି ସମ୍ମାନ ଦେଇ ଅସୁସ୍ଥ ସାହିତ୍ୟ ମନରେ ନୂତନ ଚେତନା ସୃଷ୍ଟି କରିବାକୁ ହେବ ।''

ଏସବୁ ଶୁଣି, ବିଚରା ମୃତବତ୍ ସାହିତ୍ୟ, କବି, ଗାଳ୍ପିକ ଓ ସ୍ତମ୍ଭକାରମାନଙ୍କ ଉତ୍ତେଜନାରେ ମୁହଁରୁ ଅକ୍ସିଜେନ୍ କାଢ଼ିଦେଲା । ମଶାଣି ପଠାରୁ ମୃତ ସାହିତ୍ୟ ଉଠି ବସିବ । ଦେଖିବ, ମାଲଭାଇମାନେ ମିଳିତ ଉଦ୍ୟମରେ ଏଣିକି ସୃଷ୍ଟି କଲେ ସମାଜ-ଚେତନା ଧର୍ମୀ ମୁଖପତ୍ର ''ଉଠନ୍ତୁ'' । ''ଉଠନ୍ତୁ''ର ଦୁଇ ତିନୋଟି ସଂଖ୍ୟା ହାଉ ହାଉ, ଘାଉ ଘାଉ ଭିତରେ ଦୁମ୍ ଦାମ୍ ବାହାରି ଗଲା । ଆରମ୍ଭ ହେଲା ଟେକା ଟେକି, କୋଳାକୋଳି, ଦଳାଦଳିର ସାହିତ୍ୟ ଆସର । ବିଶ୍ୱମୋହନ ବାବୁଙ୍କ ଉଦ୍ୟମରେ କିଛି ଶିଳ୍ପପତିଙ୍କୁ ଏଥିରେ କର୍ମକର୍ତ୍ତା କରାଗଲା । ସଦାନନ୍ଦ ମିଶ୍ରଙ୍କ ଉଦ୍ୟମରେ ସୁରମା ପାଣିଗ୍ରାହୀଙ୍କୁ ସଭାପତି କରାଗଲା ଓ ସାର୍ଥକ ଦାସଙ୍କ ଉଦ୍ୟମରେ ଲଖିଆ ଜେନାଙ୍କୁ କୋଷାଧ୍ୟକ୍ଷ କରାଗଲା । ଆସରର ପ୍ରଥମ ସଭାରେ ସ୍ଥିରହେଲା, 'ଉଠନ୍ତୁ' ପକ୍ଷରୁ ଏଣିକି ମାସର ଶେଷ ରବିବାରରେ କବିତା ଆସର ହେବ ।

କବିତା ଆସର ବିଷୟ ଶୁଣି ନୂତନ ବ୍ୟଙ୍ଗ ଲେଖକ ରୁଦ୍ର ପ୍ରସାଦ, ସାହିତ୍ୟର ଏ ମର୍ମନ୍ତୁଦ ଅବସ୍ଥାରେ ଘୋର ଚିନ୍ତା ବ୍ୟକ୍ତ କଲେ । ସାହିତ୍ୟ ରକ୍ଷା ପାଇଁ, ସେ ପଢ଼ିଚାଲିଲେ ସୀତାକାନ୍ତ, ରମାନାଥ, ଗୋପୀକାନ୍ତ, ବ୍ରଜନାଥ ପ୍ରଭୃତିଙ୍କ କବିତା, ଗଳ୍ପ, ଉପନ୍ୟାସ । ତାଙ୍କର ଏ ପାଗଳାମୀ ଦେଖି ପତ୍ନୀ କହିଲେ- ହଇଓ, ସାହିତ୍ୟ-ସାହିତ୍ୟ ବୋଲି ପାଗଳ ହୋଇଯିବ ନା କ'ଣ ? ବୁଝିଲ, ଘରେ ପଛେ ଖାଇବାକୁ ନାହିଁ, କଣ ନାଁ ସାହିତ୍ୟ ସାଧନା !! ପତ୍ନୀଙ୍କ ଏ ଲଙ୍କାମାର୍କା ଡ଼ାଇଲଗ୍ ଶୁଣି ଚମକି ପଡ଼ିଲେ ରୁଦ୍ର ପ୍ରସାଦ । ନିଜକୁ ଯତ୍ କିଞ୍ଚିତ୍ ମାର୍ଜିତ କରି କହିଲେ- ବୁଝିଲ, କଥାରେ ଅଛି, ଯାହା ବାପ ଚଢ଼ିଥାଏ ଘୋଡ଼ା, ସେ ବି ଚଢ଼େ ଥୋଡ଼ା ଥୋଡ଼ା । ମୋ ନନା ଜଣେ ପକ୍କା ସାହିତ୍ୟିକ ଥିଲେ । ଜେଜେ ମା କହୁଥିଲା, ତାଙ୍କ ଲେଖା କୁଆଡ଼େ ଉପେନ୍ଦ୍ରଭଂଜ, ଅଭିମନ୍ୟୁ, ଗୋପାଳକୃଷ୍ଣଙ୍କ ଲେଖା ସହ ମିଶି ଯାଉଥିଲା । ବୁଝିଲ, ସାହିତ୍ୟିକ ହେବା କମ୍ କଥା ନୁହେଁ । ସାଧନାରେ ସିଦ୍ଧି ମିଳେ । ଏଇ ଆମ ସାର୍, ରାଧାମୋହନ ବାବୁ ବିରାଟ ଔପନ୍ୟାସିକ । ଏଡ଼େ ବଡ଼

ଚାକିରୀ କରି ମଧ ସାହିତ୍ୟ ଚାଷରେ ସେ ଢେର ଆଗୁଆ । ଓଡିଆ ଭାଷାର ସୁରକ୍ଷା ପାଇଁ ତାଙ୍କର ଘୋର ସାଧନା । ଦିନେ ଏକାଡ଼େମୀ ଉତ୍ସବରେ ସମ୍ମାନିତ ଅତିଥି ଭାବେ ଯୋଗଦେଇ, ଅତି ମହାବିଦ୍ୟାଳୟର ମୁଖ୍ୟ ଗୌରଗୋବିନ୍ଦ ବାବୁ ଇଂରାଜୀ ଭାଷଣ ଦେବାରୁ, ସେ ସଭାଗୃହ ଛାଡ଼ି ଚାଲି ଆସିଥିଲେ । ଗୁଣି ଚିହ୍ନେ ଗୁଣିଆ । ଦିନେ ମୋ ଗୁଣ ଜାଣି ଡାକି କହିଲେ- ''ବୁଝିଲ ରୁଦ୍ର ପ୍ରସାଦ, ଏ ଚାକିରୀ ତୁମକୁ ସମ୍ମାନ ଦେବନି । ସାହିତ୍ୟ ସାଧନାରେ ଲାଗିଯାଅ, ଓଡ଼ିଆ ଭାଷା ରକ୍ଷାପାଇଁ ଏବେଠୁଁ ଉଗ୍ରବାଦୀ ହୁଅ ।'' ତୁମେ ଟିକେ ଅପେକ୍ଷା କର, ଦେଖ ଏ ସାହିତ୍ୟକୁ ମୁଁ କେଉଁ ଅବସ୍ଥାକୁ ନେଇଯାଉଛି । ସ୍ୱାମୀଙ୍କର ମର୍ମସ୍ପର୍ଶୀ ଡାଇଲଗ୍ ଶୁଣି ସ୍ତ୍ରୀ ମଧ, ଏ ନେଇ ସହଯୋଗ କଲେ । ଆରମ୍ଭ ହେଲା କବିତା ଲେଖା, ଶୀର୍ଷକ-''ଟୁଟୁବୋଉର ପାଦ'' ।

''ମୃତ ହରିଣୀକୁ ବାଘ ଉଠାଇଲା
ଜେଲରେ ରହିଲେ ମନ୍ତ୍ରୀ,
ସମୁଦ୍ରକୂଳର ପରିବେଶ ପାଇଁ
ଟୁଟୁବୋଉ ପାଦ ଯଥେଷ୍ଟ ନୁହେଁ କି ?
ଲୋଡ଼ା ଜଣେ ଉଗ୍ରପନ୍ଥୀ !!!''

ସେଦିନ ସାହିତ୍ୟ ଆସରରେ ପାଠ କରାଯାଇଥିବା କବିତା ଗୁଡ଼ିକୁ ସମୀକ୍ଷା କରିବାକୁ ଯାଇ ଯୁବ ସମୀକ୍ଷକ ରାମପ୍ରକାଶ କହିଲେ- ରୁଦ୍ରପ୍ରସାଦଙ୍କ କବିତା- 'ଟୁଟୁବୋଉର ପାଦ' ବୋଧହୁଏ ଚଳିତ ଦଶକର ସର୍ବଶ୍ରେଷ୍ଠ ସାହିତ୍ୟ । ତାଙ୍କ କବିତାରେ ଟୁଟୁବୋଉର ଲାବଣ୍ୟବତୀ ରୂପକୁ ହରିଣୀ ସାଥିରେ ତୁଳନା କରାଯାଇଛି । ଘରର ଗୃହିଣୀ ଟୁଟୁବୋଉ ସତେ ଯେମିତି ସମୁଦ୍ର କୂଳର ପରିବେଶ ରକ୍ଷା ପାଇଁ, ତାଙ୍କ ପାଦ ଦୁଇଟିକୁ ସମାଜ ପାଇଁ ତ୍ୟାଗ କରି ଦେଇଛନ୍ତି । ଏନେଇ କବି ନିର୍ମଳେନ୍ଦୁ କହିଲେ- ଆମେ ବର୍ଷ ବର୍ଷ ଧରି ଯାହାଙ୍କୁ ଖୋଜୁଥିଲୁ, ଏ ସେଇ ରବିନ୍ଦ୍ରନାଥ, ବଙ୍କିମ ଚନ୍ଦ୍ର । 'ଟୁଟୁବୋଉ ପାଦ' କବିତାର ଅର୍ନ୍ତଃବେଦନା ଅବର୍ଣ୍ଣନୀୟ, ଅତୁଳନୀୟ, ଅକହନୀୟ, ଓ ଅଭାଷ୍ୟମୟ । ମୋର ଦୃଢ଼ ବିଶ୍ୱାସ, ଏଇ କବିତା ଦିନେ ପୃଥିବୀରେ ବିପ୍ଳବ ସୃଷ୍ଟି କରାଇବ । ଆସର ଶେଷରେ ବିଭିନ୍ନ କବିତା ଉପରେ ମତ ଦେବାକୁ ଯାଇ ଶିଳ୍ପପତି କହିଲେ- 'ଟୁଟୁବୋଉର ପାଦ' କବିତାରେ 'ବାଘ' ଏକ ପଶୁ ନୁହେଁ, ଏକ ଅସ୍ପଷ୍ଟ ମଣିଷର ପ୍ରତିଛବି, ଯେ କ୍ରୁଦ୍ଧ, ବିକୃତ ଅଥଚ ଉଗ୍ରବାଦୀଟିଏ । ଓଃ ରୁଦ୍ରବାବୁଙ୍କ କି ଲୋମହର୍ଷକ ନିପୁଣତା !

ଆସର ସରିଲା । ବାଃ ବାଃ, ଚମତ୍କାରର ଧ୍ୱନି ଭିତରେ ପୋତି ହେଉ ହେଉ, ଘରକୁ ଫେରିଲେ ରୁଦ୍ରପ୍ରସାଦ । ମାସେ ଯାଇଛି ନା ନାହିଁ, ପୁଣି ଆରମ୍ଭ ହେଲା 'ଉଠନ୍ତୁ' ପକ୍ଷରୁ 'ସାହିତ୍ୟ ରକ୍ଷା ଓ ବଞ୍ଚା' ଆଲୋଚନା ଚକ୍ର । ଏଥର କିନ୍ତୁ ଏ ନିମନ୍ତେ ମନ୍ତ୍ରୀ ବା ଗବେଷକଙ୍କୁ ଡକାହେବାର ପ୍ରୟୋଜନ ନଥିଲା । ଏଥର ଆଲୋଚନାର ମୁଖ୍ୟବକ୍ତା ଥିଲେ, ବହୁ ଚର୍ଚ୍ଚିତ 'ଟୁଟୁବୋଉର ପାଦ' କବିତାର ମହାକବି ରୁଦ୍ରପ୍ରସାଦ ବାବୁ । ବିଭିନ୍ନ ବକ୍ତା, ଅତିଥିଙ୍କ ଭାଷଣ, ଅଭିଭାଷଣ ଓ ସମ୍ଭାଷଣ ପରେ ମାଇକ୍ ଧରିଲେ ରୁଦ୍ର ପ୍ରସାଦ । ଓଡ଼ିଆ ସାହିତ୍ୟର ରକ୍ଷା ଓ ସାହିତ୍ୟିକମାନଙ୍କ ଆର୍ଥିକ ମାନଦଣ୍ଡ, ବୃଦ୍ଧି ନିମନ୍ତେ ମାର୍ଗଦର୍ଶନ ଦେବାକୁ ଯାଇ ସେ କହିଲେ- ''ପ୍ରିୟ ବନ୍ଧୁ ! ଆଜିର ପ୍ରଥମ ସମସ୍ୟା ସାହିତ୍ୟ ଆସରରେ ଲୋକ ହେଉନାହାନ୍ତି କାହିଁକି ? ଏଣୁ ମୋ ମତରେ, ଆଜିଠାରୁ 'ଉଠନ୍ତୁ'ର ପ୍ରତିଟି ଆସର ପାଇଁ ଛପାଯାଉଥିବା ନିମନ୍ତ୍ରଣ କାର୍ଡ଼ରେ ମହାପ୍ରସାଦର ବ୍ୟବସ୍ଥା ଅଛି ବୋଲି ଉଲ୍ଲେଖ କରାଯାଉ । ଏ ନିମନ୍ତେ ଅର୍ଥ ସଂଗ୍ରହ ପାଇଁ ଏକ ଯୋଜନା କରିବାକୁ ହେବ । ଆପଣ ଜାଣନ୍ତି, ଆମ ସହରରେ ବିଭିନ୍ନ ସଭାରେ ଅତିଥି ହେବାପାଇଁ, ବ୍ରିଟିଶ୍ ହାଇକମିଶନରଙ୍କ ଭଳି ସଂବାଦପତ୍ର କାର୍ଯ୍ୟାଳୟ ପରିଦର୍ଶନ କରି ଫଟୋ ମୁଦ୍ରଣ ପାଇଁ ହେଉ ବା ସାହିତ୍ୟ ଆସର, ପାରାୟଣ, ଇତ୍ୟାଦିରେ ଅତିଥି ହେବା ପାଇଁ ହେଉ ନୀଳିମା ମିଶ୍ର, ବସନ୍ତ ରାଉତରାୟ ବା ସଂଜୁ ମହାନ୍ତିଙ୍କ ଭଳି ଲୋକଙ୍କର ଅଭାବ ନାହିଁ । ଏଣୁ ଆଗାମୀ ଆସର ପୂର୍ବରୁ, ସେହିଭଳି ବ୍ୟକ୍ତି ବିଶେଷଙ୍କ ସହ ସଂପର୍କ ସ୍ଥାପନ କରି, ତାଙ୍କ ପ୍ରଦତ୍ତ ଅଗ୍ରିମ-ହିତୈଷୀ ଅର୍ଥରେ ମହାପ୍ରସାଦ କିଣାଯାଉ । ଦ୍ୱିତୀୟରେ, ଓଡ଼ିଶାରେ ସାହିତ୍ୟ ବିପ୍ଳବ ପାଇଁ କିଛି ଜନବଳ ଦରକାର । ଏଣୁ କିଛି ନୂତନ ସାହିତ୍ୟିକ ସୃଷ୍ଟି କରିବା ପାଇଁ ଗୁପ୍ତରେ କିଛି ଯୁବ ସାହିତ୍ୟିକଙ୍କଠାରୁ, ଫଟୋଉଠା, ଫୁଲକିଣା, ଟ୍ରଫିକିଣା ଅର୍ଥ ଆଦାୟ କରାଯାଇ, ସେମାନଙ୍କୁ ଏଭଳି ଏକ ସମାବେଶରେ ସରସ୍ୱତୀଙ୍କ ବିଭିନ୍ନ ନାମରେ ସମ୍ମାନିତ କରାଯାଉ । ତୃତୀୟରେ, ମୋର ନିଜସ୍ୱମତ ଏହାକି, ସାହିତ୍ୟକୁ ବଞ୍ଚାଇ ରଖିବା ପାଇଁ ଶହୀଦ ହେବାକୁ ପ୍ରସ୍ତୁତ ଥିବା ସାହିତ୍ୟିକମାନଙ୍କ ଅଭାବ ଦୂର ହେବ କିପରି ? ଆପଣ ତ ଜାଣନ୍ତି, ପିଲାଦିନେ ସାହିତ୍ୟ ବହିରେ ରଣଜିତ ରାଜାଙ୍କୁ ବୁଢ଼ୀ କହିଥିଲା- ''ଅଭାବ କଷଣ ନ ଘୁଞ୍ଚିଲେ ଦେଶୁ , ଜନମିବେ କାହିଁ ବୀର'' । ଏଣୁ ଆମ ସାହିତ୍ୟିକମାନେ ପ୍ରଥମେ ଜଣେ ଜଣେ ଲକ୍ଷପତି ହେବା ଦରକାର, ଯଦ୍ୱାରା ସେମାନଙ୍କ ମନ ସୁସ୍ଥ ରହିବ ଓ ସେମାନେ ସାହିତ୍ୟକୁ ଟେକି ଧରିପାରିବେ । ଏ ଯୋଜନାର ସଫଳ ରୂପାୟନ ପାଇଁ ପ୍ରଥମେ ଏକ ବିଜ୍ଞାପନ ଦିଅନ୍ତୁ- ''ସାହିତ୍ୟିକ ହେବାକୁ ଚାହାନ୍ତି

କି ? ଯଦି ଚାହାନ୍ତି- ନିମ୍ନ ଠିକଣାରେ ମାତ୍ର ପାଞ୍ଚଟଙ୍କା, ନିଜ ଠିକଣା ସହ ପଠାନ୍ତୁ ଓ ବର୍ଷକରେ ସାହିତ୍ୟିକ ହେବା ସହ ଲକ୍ଷପତି ହୁଅନ୍ତୁ'' । ଏ ବିଜ୍ଞାପନ ପ୍ରକାଶ ପାଇବା ପରେ ଦେଖିବେ, ଗାଁ ଗହଳି ଠାରୁ ସହରର, ସାହି ଗଳି କନ୍ଦିର ଶହ ଶହ ସାହିତ୍ୟିକ ପାଠକ ଟଙ୍କା ପଠାଇବେ । ସେ ଅର୍ଥ ପାଇ ଲେଖନ୍ତୁ- ଆପଣଙ୍କ ଭଳି ସାହିତ୍ୟାନୁରାଗୀଙ୍କ ପାଇଁ ଓଡ଼ିଶା ଓ ଓଡ଼ିଆ ସାହିତ୍ୟ ଗର୍ବିତ ।ତୁରନ୍ତ ଆପଣ ଆପଣଙ୍କ ସର୍ବଶ୍ରେଷ୍ଠ ଲେଖା ସହ ମାତ୍ର ପଚାଶ ଟଙ୍କା ପଠାନ୍ତୁ । ସେ ଅର୍ଥ ପାଇବା ପରେ ଲେଖନ୍ତୁ ଆପଣଙ୍କ ଲେଖା ପ୍ରକାଶନ ପାଇଁ, ମନୋନୀତ ହୋଇଛି । ଆମେ ସ୍ଥିର କରିଛୁ, ଆପଣଙ୍କ ଲେଖାକୁ ମୁଦ୍ରଣ କରି, ଗାଁ ଓ ସହରକୁ ପଠାଇବୁ । ଏଣୁ ଗ୍ରାମର ସାହିତ୍ୟିକମାନେ ନିଜର ଏକ ଖାସ୍ ଫଟୋ ସହ ଦେଢ଼ ଶହ ଟଙ୍କା ଓ ସହରୀ ସାହିତ୍ୟିକମାନେ ଏକ ଶହ ଟଙ୍କା ପଠାନ୍ତୁ । ସେ ଅର୍ଥ ପାଇବା ପରେ ତୁରନ୍ତ ଲେଖନ୍ତୁ- ଆପଣଙ୍କ ଲେଖା ସହ ଆପଣଙ୍କ ବାଇଓଡ଼ାଟା ଯଥା ଜନ୍ମ, କେବେଠୁଁ ଲେଖିଲେ, ପ୍ରେରଣା କିଏ ? ସମ୍ମାନିତ କି ଯଦି ହଁ କେଉଁଠାରୁ ? ଇତ୍ୟାଦି ସହ ସାତଦିନ ଭିତରେ ତିନିଶହ ଏକ ଟଙ୍କା ପଠାନ୍ତୁ । ଆମେ ସ୍ଥିର କରିଛୁ ଯେ, ଆପଣଙ୍କୁ ଆମେ ସମ୍ମାନିତ କରିବୁ । ସେ ଅର୍ଥ ପାଇବା ପରେ ସଂଗୃହୀତ ଅର୍ଥରୁ ଦଶଭାଗ ଖର୍ଚ୍ଚକରି କ୍ୟାପିଟାଲରୁ ଏକ ମନ୍ତ୍ରୀ, ସମ୍ବାଦପତ୍ରର ଜଣେ ସଂପାଦକଙ୍କୁ ଡକାଇ ଆସରର ଆୟୋଜନ କରି ଯୁବ-ପ୍ରତିଭାମାନଙ୍କୁ ମାନପତ୍ର, ଟ୍ରଫି ସହ ଏକ ଗୁପ୍ତ ଚିଠି- ''ଆମେ ଯାହା କଲୁ ଆପଣ ବି ସେଇୟା କରନ୍ତୁ ଓ ଲକ୍ଷପତି ହୁଅନ୍ତୁ'', ଧରାଇ ଦିଅନ୍ତୁ । ରୁଦ୍ର ପ୍ରସାଦଙ୍କ ଏ ଅଭିନବ ଚିନ୍ତାଧାରାକୁ ସମର୍ଥନ କରି କରତାଳିରେ ସତେ ଯେପରି ଭାଙ୍ଗି ଯାଉଥିଲା, ଆସର ଘରଟି ।

ଚାହୁଁ ଚାହୁଁ, ସମଗ୍ର ଓଡ଼ିଶାରେ ନାଁ କରିଗଲେ ରୁଦ୍ର ପ୍ରସାଦବାବୁ । 'ସାହିତ୍ୟ ରକ୍ଷା ଓ ବଞ୍ଚା' ନେଇ ତାଙ୍କର ଉଦ୍ଭଟ ଚିନ୍ତାଧାରା ପାଇଁ ସେ ପାଇଲେ ସହର ସ୍ତରୀୟ, ଜିଲ୍ଲାସ୍ତରୀୟ, ରାଜ୍ୟସ୍ତରୀୟ ଏପରିକି ସର୍ବଭାରତୀୟ ପୁରସ୍କାର । ଦିନେ ମାନ୍ୟବରଙ୍କ ଅନୁମୋଦନ କ୍ରମେ, ରୁଦ୍ରପ୍ରସାଦ ବାବୁ ଜନସଭାକୁ ମନୋନୀତ ହେଲେ । ଶିଳ୍ପ ବିଭାଗ ଦାୟିତ୍ୱ ନେବାର ଶପଥପାଠ, ସେଦିନ ଦୂରଦର୍ଶନରୁ ସିଧା ପ୍ରସାରଣ ହେଲା । 'ଟୁଟୁବୋଉର ପାଦ'ର ମହାକବି ତଥା ଶିଳ୍ପ ଦାୟିତ୍ୱରେ ଥିବା ଜନନେତା ରୁଦ୍ରପ୍ରସାଦ ଘୋଷଣା କଲେ- ''ଏଣିକି ସାହିତ୍ୟକୁ ଶିଳ୍ପ ଘୋଷଣା କରାଯିବ । ସାହିତ୍ୟ ଫସଲ, ଆମର ସାଧାରଣ ଧାନ ଓ ରବି ଫସଲ ଭଳି ଏକ ଉଚ୍ଚମାନର ଫସଲ । ସାହିତ୍ୟ ଫସଲ ପାଇଁ ଋତୁର ଆବଶ୍ୟକତା ନଥାଏ । ବର୍ଷା-ଖରାର ପ୍ରୟୋଜନ ନଥାଏ, ଏନେଇ ଉନ୍ନତ

ବିହନ ବା ସାରର ଦରକାର ପଡ଼େ ନାହିଁ । କାଗଜ, କଲମ ଓ ମୁଣ୍ଡବୁଦ୍ଧିର ସମ୍ମିଶ୍ରଣରେ ସାହିତ୍ୟର କଞ୍ଚାମାଲ ସୃଷ୍ଟି ହୁଏ । ଏଣୁ ସାହିତ୍ୟର କଞ୍ଚାମାଲକୁ ନେଇ ଆଗାମୀ ଯୋଜନାରେ ବହୁ ବହୁ ଶିଳ୍ପ ପ୍ରତିଷ୍ଠା କରାଯିବ ଓ ଯାହା ଦେଶର ଆର୍ଥିକ ଉନ୍ନତି ଓ ସାମାଜିକ ସ୍ଥିରତାରେ ମୁଖ୍ୟ ସହାୟକ ହେବ । କେବଳ ଏତିକି ନୁହେଁ, ମୋର ଇଚ୍ଛା ଦେଶର ଦୁଃସ୍ଥ ଓ ନିଷ୍ପେସିତ, ନିର୍ଯ୍ୟାତିତ ସାହିତ୍ୟିକମାନଙ୍କଠାରୁ କଞ୍ଚାମାଲ ସଂଗ୍ରହ ପାଇଁ, ବିଦେଶୀ ପୁଞ୍ଜି ବିନିଯୋଗ କରାଯିବ ଓ ଆବଶ୍ୟକ ପଡ଼ିଲେ ଆମ ସାହିତ୍ୟ ଓ ସାହିତ୍ୟିକଙ୍କୁ ବିଭିନ୍ନ ଦେଶକୁ ବହୁ ପରିମାଣରେ ରପ୍ତାନୀ କରାଯିବ । ଏ ଦେଶରେ ଏଣିକି ସାହିତ୍ୟ, କି ସାହିତ୍ୟିକ କାହାର ଅଭାବ ରହିବନି । ଏ ମୋର ବଜ୍ର ଶପଥ'' ।

ଦୂରଦର୍ଶନର ସିଧାପ୍ରସାରଣରେ ସ୍ୱାମୀଙ୍କ ମନ୍ତ୍ରମୁଗ୍ଧ ଭାଷଣ ଶୁଣି ଲାଜେଇ ଯାଉଥିଲେ ଟୁଟୁବୋଉ । ସତରେ ବୋଉ ଠିକ୍ କହିଥିଲା- ''ମୋ ଝିଅ ପରା ଲକ୍ଷ୍ମୀଙ୍କ ପାଦକୁ ଆଣିଛି, ତାକୁ ପୁଣି ଅଭାବ କ'ଣ'' !!!






ସେଦିନ ରଣପୁର, ବୃନ୍ଦାବନପୁର ଶାସନର ସମୃଦ୍ଧି ଗୋବିନ୍ଦ ମିଶ୍ର ଓ ମହାମାନ୍ୟା ସମୃଦ୍ଧଣୀଙ୍କ ରାମମନ୍ଦିର ପ୍ରତିଷ୍ଠା ଜନିତ ନିମନ୍ତ୍ରଣକୁ ଭାଙ୍ଗିନପାରି, ବରବସ୍‌ରେ ବୋଇଲିମା ଛକରେ ଓହ୍ଲାଇ, ଘଡ଼ିଏ ବସିଗଲେ ରସଚିତ୍ରକ ବାବୁ । ଆଜିକାଲିକା ଟୋକା-ଟାକେଳିଆ ଜମାନାରେ, ଘର ପ୍ରତିଷ୍ଠା,ମନ୍ଦିର ପ୍ରତିଷ୍ଠା ଛଡ଼ା ଅନ୍ୟ ମାଂଗଳିକ କାର୍ଯ୍ୟରେ ଯୋଗଦେବାର ଭାଗ୍ୟ, ତାଙ୍କ ଭଳି ବୟସ୍କ ଲୋକଙ୍କର ବା' କାହିଁ ? ଅଫିସିର ବଡ଼ବାବୁ ଭାବେ, ବୁଢ ଟା[illegible] ବାହାଘରିଆ କାମରେ ଗଲେ ଯେ, ଟୋକାଗୁଡ଼ାକ ମାଲ ପିଇ ହିରୋ ହେଉ ହେଉ, ନିହାତି ମଫଗାଁରେ ଧକା-ଶଙ୍ଖିଆ ବି ଖାଇଲେ । ବ୍ରତଘରିଆ କାମରେ ଗଲେ ଯେ, କୁକୁଡ଼ା ରକ୍ଷା ଜାଣି , ଅଧାରୁ ଆସିଲେ । ଏକଥା କହିଲେ, ପିଲେ କହନ୍ତି-''ବଡ଼ବାବୁ, ଆଉ ଦି-ଚାରିଟା ମାସପରେ ତ ରିଟାୟର୍ଡ଼ ହେବ, ଆଉ କ'ଣ ଏସବୁ ମିଳିବ ? ତା ଛଡ଼ା, ଆଜିକାଲିକା ନାତିଶତୋଷିଆ ଯୁଗରେ, ମଦ ପିଇ ନ ନାଚିଲେ ଖାଦ୍ୟ କୁ'ହଜମ ହେବ ଯେ ? ଯଦି ମଦ ନ ପିଇ, ନ ନାଚି, ଭଦ୍ର ଲୋକରେ ଯିବୁ, ବିଚରା ସାଂଗ ଜୋଗଁଟା ମାୟାରେ ଗଣାହେବ, ନିର୍ଯ୍ୟାତନା ପାଇବ । ଆଉ ଏ ଖାଦ୍ୟ କଥା । ଆନ୍ଧ୍ରାରୋହିର ପିତୁଳିଆ ଭୋଜିଠାରୁ ଏ କୁକୁଡ଼ା ବା ରାମ-ପକ୍ଷୀର ଖାଦ୍ୟ ଭଲ ନୁହେଁ କି ? ନାଉଁ ତୁମେ ଯଦି କହିବ ଏ ଜୀବହତ୍ୟା, ତେବେ ମାଛର କ'ଣ ଜୀବନ ନାହିଁ, ନା ଛେଳିଟା ଜୀବ ନୁହେଁ ??'' ଟୋକାଙ୍କ କଥାରେ ହସି ଦିଅନ୍ତି

ରସଚିତ୍ରକ ବାବୁ । ମନେ ମନେ ଭାବନ୍ତି, ବିରୋଧ କରି ଲାଭ କ'ଣ ? ବରଂ ହଁ ହାଁ କହି ଦି'ଚାରି ମାସ ଗଲେ ଯାଏ । ଭାବନା ଭିତରେ ପହଞ୍ଚିଗଲେ ନାତୁଣୀ ଜୋଇଁ । ସମୁଦି ଗାଁରେ ପାଦ ଦେଇ ଧନ୍ୟ ହୋଇଗଲେ ରସଚିତ୍ରକ ବାବୁ । ସୁନ୍ଦର ଗାଁ, ସୁନ୍ଦର ମଣିଷ, ସୁନ୍ଦର ମନ୍ଦିର । ସଂଧ୍ୟାକୁ ନୂତନ ରାମମନ୍ଦିର ପ୍ରତିଷ୍ଠା ପରିପ୍ରେକ୍ଷୀରେ ଧର୍ମ ଆଲୋଚନା ସଭା ହେଲା । ପହଞ୍ଚିଗଲେ ପ୍ରବଚକଦଳ । କିଏ କେଉଁ ଅଫିସିର ଅଫିସର୍ ତ, କିଏ ଅଧ୍ୟାପକ । ସଂସାର କରି, ଚାକିରୀ କରି, ପର ଗାଁକୁ ଯାଇ ଧର୍ମ-ପ୍ରବଚନ ଦେଇ, ଦି' ପଇସା ରୋଜଗାର କରି ଲୋକଙ୍କୁ ଧର୍ମୀୟ ଭାବନାରେ ସାମୟିକ ଉଦ୍‌ବୁଦ୍ଧ କରିବା କମ୍ କଥା ନୁହେଁ । ବକ୍ତାମାନଙ୍କ ଭାଷଣ ପରେ, ସମୁଦି-ସମୁଦୁଣୀଙ୍କ ଅନୁରୋଧକ୍ରମେ ମଞ୍ଚକୁ ଗଲେ ରସଚିତ୍ରକ ବାବୁ । ଭାଷଣ ଦେଇ ସେ କହିଲେ- କିଏ କହିଲା ସତ୍ୟ ନାହିଁ, ଧର୍ମ ନାହିଁ ! କିଏ କହିଲା କଳିଯୁଗ ଶେଷ ହେଉନି ? ଆଜି ମୋର ପୁରୀରୁ ଏଠାକୁ ଆସିବା ବାଟର ଦୃଶ୍ୟ, ଆଃ... କି ସୁନ୍ଦର । ସତରେ ସମାଜରେ କି ଅଭୂତପୂର୍ବ ପରିବର୍ତ୍ତନ ! ଏବେ ମୁଁ ବୁଝିପାରୁଛି, କ'ଣ ପାଇଁ ଲୋକେ ଗାଁ ଗଣ୍ଡା ଛାଡ଼ି ସହରକୁ ଦଉଡୁଥିଲେ, ଗାଁ ଗଣ୍ଡାର ଭାଗବତ ଟୁଙ୍ଗୀ, ଦଣ୍ଡାମୁଣ୍ଡ ଠାକୁରାଣୀ, ଗାଁର ଗୋପୀନାଥ ମନ୍ଦିରକୁ ଅବହେଳା କରି ସହରାଭିମୁଖୀ ହେଉଥିଲେ । ମୁଁ ଏଇଥି ପାଇଁ ଖୁସି ଯେ, ଗାଁରୁ ସହର ଯାଏଁ ଆଜି ଠାକୁରଙ୍କ ଦୋଳପିଣ୍ଡି ସ୍ଥାପନ ଚାଲିଛି । ଉଉରା ଛକରୁ ଭୁବନେଶ୍ୱର, ଭୁବନେଶ୍ୱରରୁ ଖୋର୍ଦ୍ଧା, ଖୋର୍ଦ୍ଧାରୁ ବାଘମାରି ଯାଏଁ ଆଜି ହଜାର ହଜାର ଏକର ଧାନ ଜମିରେ ଆରମ୍ଭ ହୋଇଯାଇଛି, ଠାକୁରଙ୍କ ପାଇଁ ନିଅଁ ଖୋଳା ଅଭିଯାନ । ଆଉ ଆଜିର ଏ ରାମମନ୍ଦିର ପ୍ରତିଷ୍ଠା ପ୍ରମାଣ କରିଛି, ସତ୍ୟଯୁଗ ଆଉ ବେଶିବାଟ ନୁହେଁ । କରତାଳିରେ ଫାଟିପଡ଼ିଲା ପାରାୟଣ ଘର ।

ଘରକୁ ଫେରି ସଗର୍ବର ସହ ଶୋଇବାକୁ ଯାଉ ଯାଉ ସମୁଦୁଣୀ କହିଲେ- ହଇଓ ସମୁଦି, ତୁମକୁ ଏ ବାଟ ଘାଟ ପିଣ୍ଡି ଗୁଡାକ ଦୋଳ-ପିଣ୍ଡିଭଳି ଲାଗିଲା ? କଥା ନ ସରୁଣୁ ପହଞ୍ଚିଲା ଜୋଇଁ ପୁଅଟା । ହସି ହସି ଗଡ଼ି ଯାଉ ଯାଉ କହିଲା- ''ବୁଝିଲ ଅଜା ଏ ଗାଁ ବୋଲି ରକ୍ଷା ପାଇଗଲ, ଯଦି ସହର ହୋଇଥାନ୍ତା ନା..., ଆହେ, ସେ ପିଣ୍ଡି ଦିଅଁଙ୍କ ଆସ୍ଥାନ ନୁହେଁ । ସେ ପରା ଘରକିଣା ବ୍ୟାପାର । ସହରର ଚାକିରିଆ ଗୁଡ଼ାକ ଆଉ କ'ଣ ହଳଜମି ରଖୁଛନ୍ତି ? ଖାଲି ଉଉରା ବା ଖୋର୍ଦ୍ଧା ନୁହେଁ, ଭୁବନେଶ୍ୱରର ସୀମା କଟକ ଧରିଲାଣି, କଟକ ସୀମା ମହାନଦୀ ଡେଇଁଲାଣି । ଏମିତି ଜାଗା ଅଭାବ ଯେ, ଲୋକେ ନଈ ପଠାଠୁ ନାଳବନ୍ଧ ଯାଏଁ କିଛି ଛାଡ଼ି ନାହାନ୍ତି । ନନ୍ଦନକାନନର ସିଂହବଣ, ପଟିଆର ସାପବଣ ସବୁଆଡ଼େ ପରା ଜମିକିଣା ଓ ଗୃହନିର୍ମାଣ ଚାଲିଛି । ବୁଝିଲ ଅଜା ଖୁବ୍ ଭଲ ବ୍ୟବସାୟ । ଘରେ ବସି, ହଜାର ହଜାର ରୋଜଗାର । ଆଉ ତୁମେ ଯେଉଁ ପୋଷ୍ଟରେ ଅଛନା, ଯଦି ଚାହିଁବ, କ'ଣ ନାଇଁ କ'ଣ ହୋଇଯିବ ।'' ରାତିଟାଯାକ ନାତୁଣୀ ଜୋଇଁର କଥାକୁ ଭାବି ଚାଲିଲେ ରସଚିତ୍ରକ ବାବୁ । ପରଦିନ ନାତିଟୋକା ସାଙ୍ଗେ କ୍ୟାପିଟାଲ୍ ଗଲେ । ସତରେ ସାରା ଭୁବନେଶ୍ୱରଟା କୋଠାମାଳରେ ଭରପୁର । ପରିସ୍ରା ଯିବାକୁ ସ୍ଥାନଟିଏ ନାହିଁ । ଯାହା ଘରେ ଦେଖିବ, ଫ୍ରିଜ୍, ରଂଗୀନ୍ ଟି.ଭି. ଇତ୍ୟାଦି । ନାତିଟୋକା ବୁଝାଇ ଦେଲା, ବୁଝିଲ ଅଜା, ଯେତେ ଯିଏ ବେପାର

କରୁ, ଏ କିଣାବିକା ବ୍ୟାପାରର ଲାଭ, କେଉଁଠି ନାହିଁ । ଜମି କିଣିବ ଜଣେ, ବିକିବ ଜଣେ, ମଧ୍ୟସ୍ଥି କେବଳ କାଗଜ ଦେଖାଇ, ହଜାର ହଜାର କମେଇବ । ଏବେ ଚାକିରୀ ବାକିରୀ କରିଥିବା ମଣିଷ ଗୁଡ଼ାକ ଏ ବେପାରରେ ଧୁମ୍ ପଇସା କମେଇଲେଣି । ଘରେ ଅପାଠୋଇ ସ୍ତ୍ରୀ ଗୁଡ଼ାକ ଏକ ଏକ ଅଫିସର୍ ହୋଇଗଲେଣି । ସାତ ଆଠଟା ପ୍ଲଟ ବିକାଇ ଦେଲେ ଗୋଟେ ପ୍ଲଟ ମାଗଣା । ନତୁବା ପ୍ଲଟ ପିଛା ପାଞ୍ଚହଜାର ମଧ୍ୟସ୍ଥିର । ତୁମର ଆଉ ବର୍ଷେ ଚାକିରୀ, ଏଧନ୍ଦା ଏବେଠୁ ଆରମ୍ଭ କଲେ ରିଟାୟର୍ଡ଼ ବେଳକୁ ପୁରା ମାଲାମାଲ୍ ହୋଇଯିବ ।'' ରସଚିତ୍ରକ ବାବୁ ଭାବୁଥିଲେ, କି ସ୍ୱାଧୀନତା ଇଏ ? କି ସରକାର ଇଏ ? ଏଠି ଶିକ୍ଷିତ ବେକାର ଗୁଡ଼ାକ ମୁଠାଏ ଖାଇବାକୁ ନ ପାଇ ଡ୍ରଗସ୍ ବେପାର, ଗାଡ଼ି ଚୋରୀ କରୁଥିବାବେଳେ, ଚାକିରିଆ ଲୋକ ଗୁଡ଼ାକ ଏଇଆ କରୁଛନ୍ତି ? ତେବେ ସ୍ତ୍ରୀ ଓ ଦୁଇଝିଅଙ୍କ ସହ ପରାମର୍ଶ କରି ଏ ବେପାରରେ ମୁଣ୍ଡ ପୂରାଇଲେ ରସଚିତ୍ରକ ବାବୁ । ପ୍ରଥମ ଦଫାରେ ନିଜର ବନ୍ଧୁବାନ୍ଧବ, କାର୍ଯ୍ୟାଳୟର କିରାଣୀମାନଙ୍କୁ ଆଠଟି ପ୍ଲଟ୍ ବିକାଇ ମାହାଳିଆ ପ୍ଲଟ୍‌ଟାଏ ପାଇଗଲେ ସେ । ପୁଷ ମାସରେ ଝିଅ-ଜୋଇଁଙ୍କୁ ଡାକି ସବୁ ଘଟଣା କହିବା ପରେ, ସଭିଏଁ ମତଦେଲେ, ଜି.ପି.ଏଫ୍. ଉଠି, ଘର ନିଅଁ ପଡ଼ିଯାଉ । ରିଟାୟର୍ଡ଼ ପରେ ସମସ୍ତଙ୍କ ସାହାଯ୍ୟରେ ଘର ତିଆରି ହେବ । ବଡ଼ ଝିଅ କହିଲା- ବୁଝିଲ ବାପା, ତୁମେ ଖାଲି ନିଅଁ କାମ ସାରିଦିଅ, ମୁଁ ଯା'ଙ୍କୁ କହି ବ୍ୟାଙ୍କ-ଲୋନ୍ କରାଇଦେବି । ଘରଭଡ଼ା ଲଗେଇ ବ୍ୟାଙ୍କକୁ ସୁଝିବା । ସାନ ଝିଅ କହିଲା- ଆମେ ଟଙ୍କା ଦେବୁ । ତୁମେ ଆଗ ନିଅଁ କାମ ସାର । ପିଲାଙ୍କଠାରୁ ପ୍ରୋତ୍ସାହନ ପାଇ, ଜି. ପି. ଏଫ୍. ଉଠାଣ ପାଇଁ ଦରଖାସ୍ତ କରିଲେ ସେ । ତଥାପି ଟଙ୍କା ନିଅଣ୍ଟ । ଏଣୁ ସ୍ତ୍ରୀଙ୍କ ସୁନାକୁ ଅର୍ବାନ୍ ବ୍ୟାଙ୍କରେ ବନ୍ଧା ପକାଇ କିଛି ଟଙ୍କା ଆସିଲା । କିଣାଗଲା ପଥର, ବାଲି, ସିମେଣ୍ଟ । ଭଲଦିନ ଦେଖି ପିଲାଙ୍କୁ ସାଥିରେ ଧରି ମୁହାଁଇଲେ ପ୍ଲଟ୍ ଉପରକୁ । ଖୁବ୍ ସୁନ୍ଦର ପ୍ଲଟ୍ । ଆଗରେ ଝଙ୍କାଳିଆ ବରଗଛ । ବାଉଣ୍ଡରୀ ହେଲା । ନାମଫଳକ ଲଗାଗଲା- ''ମାତୃକୃପା-ରସମଞ୍ଜରୀ ନିବାସ'' । ଫଳକକୁ ଦେଖି ଧନ୍ୟ ହୋଇଗଲେ ମଞ୍ଜରୀ ଦେବୀ । ନିଅଁ କାମସାରି ଆନନ୍ଦରେ ଗଦ୍ ଗଦ୍ ହୋଇ ଫେରିଲେ ରସଚିତ୍ରକ ବାବୁ । ଗାଁ ଗହଳିର ଲୋକଙ୍କର କ୍ୟାପିଟାଲରେ ଘର କିଣିବା କ'ଣ କମ କଥା !! ଜୁଲାଇ ମାସରେ ରିଟାୟର୍ଡ଼ ହେଲେ ରସଚିତ୍ରକ ବାବୁ । ସ୍ୱପ୍ନର ଦିନ ଆସିଲା । ଅଗଷ୍ଟପନ୍ଦରର ପାହାନ୍ତା ପହରେ ରସଚିତ୍ରକ ବାବୁ, ପୁରୀ ଘରବିକା ଟଙ୍କା ଧରି ଚାଲିଲେ କ୍ୟାପିଟାଲ । ତମାଣ୍ଡୋରୁ ଚିପସ୍, ଷ୍ଟେସନ ଛକରୁ ରଡ୍, ନଖରାରୁ ଇଟା ଟ୍ରକ୍ ପହଞ୍ଚିଗଲା ପଟିଆରେ । ଅଥଚ ପ୍ଲଟଟିକୁ ଖୋଜୁ ଖୋଜୁ ଝାଳନାଳ ହୋଇଗଲେ ସେ ଓ ମଂଜରୀଦେବୀ । ପ୍ଲଟ୍‌ର ଖୋଜ୍ ଖବର ନଥିଲା । ମଂଜରୀ ଦେବୀଙ୍କ ଝଙ୍କାଳିଆ ବରଗଛ ଚିହ୍ନଟରୁ ପ୍ଲଟ୍‌ର ଠାବ ହେଲା । ଦୁଆରେ ଲେଖାଥିଲା- ''ଲକ୍ଷ୍ମୀଧର ମଲ୍ଲିକ'' ଦୁଃଖ, ଯନ୍ତ୍ରଣା ଓ ଉତ୍ତେଜନା ଭିତରେ କଲିଂବେଲ୍‌ରେ ହାତ ଦେଲେ ରସଚିତ୍ରକ ବାବୁ । ଘରୁ ବାହାରି ଆସିଲେ, ମହିଳା ଜଣେ । ପଚାରିଲେ ରସଚିତ୍ରକ ବାବୁ- ଏ ଘର ଆପଣଙ୍କର ? ହସିଲେ ମହିଳା ଜଣକ । ପୁଣିଥରେ ରସଚିତ୍ରକ ବାବୁ ପଚାରିଲେ- ଆପଣ ଲକ୍ଷ୍ମୀଧର ବାବୁଙ୍କ.... । ପୁଣି ହସିଲେ ମହିଳା ଜଣକ । ରୁକ୍ଷତା'ର ହସ, ହସୁ ହସୁ କହିଲେ, ''ଆପଣ ଚନ୍ଦ୍ରମାଧବ ନା ରସଚିତ୍ରକ ବାବୁ ? ବୁଝିଲେ ଆଜ୍ଞା, ମୁଁ ଏ ପ୍ଲଟ୍‌ର ତିନି

ନମ୍ବର ଖରିଦ୍‌ଦାର୍ । ଖରିଦ୍ କଲାର ଦୁଇମାସ ପରେ ଜାଗା ଉପରକୁ ଆସେ ତ, ମୋ ଜାଗାରେ ନିଅଁ ପଡ଼ିଛି ଓ ଫଳକ ଲାଗିଛି 'ରସମଂଜରୀ ନିବାସ' । ଫଳକ ଖୋଳିକି ନିଅଁ ଉପରେ ଘର କଲି । ଆସିଲେ ଗାଁ ଟୋକା । ତାଙ୍କର ଗୋଟେ ଜିଦ୍, ଏଠି ଘର କଲେ, ଗାଁ ଠାକୁରଙ୍କ ପାଇଁ ଦଶହଜାର ଓ ଗାଁ କ୍ଲବ୍‌କୁ ପାଞ୍ଚ ହଜାର ଦେବାକୁ ହେବ । ଟଙ୍କା ଦେଲି । ଅଧା କାମରେ ପହଞ୍ଚିଲା ଓକିଲ ନୋଟିସ୍ । ଚନ୍ଦ୍ରମାଧବ ବାବୁ ନାମକ ବ୍ୟକ୍ତି, ଯେ କି ଏ ପ୍ଲଟ୍‌କୁ ପ୍ରଥମେ କିଣିଥିଲେ, ସେ ୧୪୪ ଜାରୀ କଲେ । କୋର୍ଟ-କଚେରୀ ଦୌଡ଼ି ଦୌଡ଼ି ବାର ହଜାର ଖର୍ଚ୍ଚ । ସେ କାମ ସରିଛି ନା ନାହିଁ, ପହଞ୍ଚିଲେ ଚତୁର୍ଥ ନମ୍ବର ଖରିଦ୍‌ଦାର । ବହୁ ତର୍କ-ବିତର୍କ ପରେ ଆସିଲେ ଗୁଣ୍ଡା, ପରେ ପରେ ପୋଲିସ୍ ବାଲା । ଗୁଣ୍ଡା ଓ ପୋଲିସ୍‌ଙ୍କ ସହ ବେପାର କରୁ କରୁ ଗଲା ଆଠ ହଜାର । ତେବେ କୁହନ୍ତୁ- ଏ ଜାଗା କିଣାରେ ମୋର କେତେ ଖର୍ଚ୍ଚ ହେଲା ? ବୁଝିଲେ ଆଜ୍ଞା ଆଜି କେବଳ କ୍ୟାପିଟାଲ୍ ନୁହେଁ, ପୁରୀ-କଟକ ସବୁଠି ଏ ଅବସ୍ଥା । ଜଣେ ଗୋଟେ ଗୋଟେ ପ୍ଲଟ୍‌କୁ ଅଠର ଜଣଙ୍କୁ ବିକି ଦେଉଛନ୍ତି । ଦଲାଲଙ୍କଠାରୁ ମାତ୍ର ପଚାଶ ଟଙ୍କା ନେଇ, ରେଜେଷ୍ଟ୍ରି ଅଫିସିରେ, କିଛି ଲୋକ କ୍ରେତାଙ୍କୁ ନନ-ଇନକମ୍ବ୍ରାନ୍ସ କାଗଜ ଧରାଇ ଦେଉଛନ୍ତି । ଦଲାଲଙ୍କଠାରୁ ମାତ୍ର ଶହେ ଟଙ୍କା ଦେଇ, ବନ୍ଦୋବସ୍ତ-ତହସିଲ୍‌ର କିଛି କର୍ମଚାରୀ, ନକଲି ପଟା-ପାଉତି କ୍ରେତାଙ୍କୁ ଦେଖାଉଛନ୍ତି । ବୁଝିଲେ ଆଜ୍ଞା, ଏ ଯୁଗ ନକଲି ଯୁଗ । ଏ ଜମି କିଣା ବିକା ଛାଡ଼ । ସରକାର ପରା ନିଜ ସ୍ୱାର୍ଥ ପାଇଁ ରାତାରାତି ସରକାରୀ ଶଙ୍କରାଚାର୍ଯ୍ୟ ସୃଷ୍ଟି କରି ଦେଉଛନ୍ତି । ହେଇ ଦେଖନ୍ତୁ, ତିରିଶବର୍ଷର ନକଲି ଟୋକାଟା, ମୁଣ୍ଡରେ ଭସ୍ମ ବୋଳି, ସିଲିଗୁଡ଼ି ପୋଲିସ୍ ସହାୟତାରେ କିପରି ପୁରୀରେ ପହଞ୍ଚିଗଲା ।''

ମହିଳାଙ୍କ କଥା ଶୁଣୁ ଶୁଣୁ ନିର୍ଜୀବ ହୋଇ ଯାଉଥିଲେ ରସଚିତ୍ରକ ବାବୁ । ଭୋ ଭୋ କରି ବାହୁନା ପକାଇଲେ ମଂଜରୀ ଦେବୀ । ଜଳକା ହୋଇ ଚାହିଁ ରହିଲେ ଟ୍ରକ୍ ଡ୍ରାଇଭର ଗୁଡ଼ାକ । ଚାକିରୀ ଜୀବନର ପୁଂଜି, ପୁରୀର ଭିଟାମାଟି, ସ୍ତ୍ରୀର ଗହଣା ବଦଳରେ, ପାଇଥିବା ଶୂନ୍ୟତାକୁ ସେ ବାରମ୍ବାର ନିରୀଖେଉ ଥିଲେ । ତାଙ୍କର ମନେ ପଡୁଥିଲା ଝିଅ-ଜୋଇଁଙ୍କ ସାହାଯ୍ୟ ଦେବାର ଡାଇଲଗ୍ ଗୁଡ଼ାକ । ବିନା ମୂଲ୍ୟରେ ଜମି ପଇବା ନ୍ୟାୟରେ ମହରଗରୁ ଆସି କାନ୍ତାରରେ ପଡ଼ି, ସେ ଚିନ୍ତା କରୁଥିଲେ, ଫେରିବେ କେଉଁଠିକି ? କେଉଁଠି ମୁଣ୍ଡ ଗୁଂଜିବେ ?? ଷ୍ଟେସନର ଖୋଲା ସିମେଣ୍ଟ ବେଞ୍ଚ ଉପରେ ମଂଜରୀଙ୍କ ସହ ନୀରବରେ ବସିରହି ସେ ପଢୁଥିଲେ- ବିଧାନସଭା ପ୍ରଶ୍ନୋତ୍ତରରେ ବିରୋଧୀଦଳ ବିଧାୟକଙ୍କ ''ସହର-ଗ୍ରାମରେ ଧାନଜମିର ଅଭାବରୁ ଖାଦ୍ୟଶସ୍ୟ ଅଭାବ''ର ପ୍ରଶ୍ନ ଉପରେ ବିଭାଗୀୟ ମନ୍ତ୍ରୀଙ୍କ ''ପାଶ୍ଚାତ୍ୟ ଦେଶଭଳି, ଓଡ଼ିଶାର ବିଭିନ୍ନ ଛାତ ଉପରେ ସଫଳଧାନ ଫସଲ ହୋଇ ପାରିବ''ର ଦୃଢ଼ ଜବାବ୍‌କୁ । ମଞ୍ଜରୀ ବସିଯାଇଥିଲେ ନୀରବରେ । ଯୁଗ ଯୁଗର ଦୁଃଖ, ଅଭାବ ପରେ, ଭବିଷ୍ୟତର ସୁଖ ଖୋଜୁ ଖୋଜୁ, ଜୀବନଯାକର କୋହ ସତେ ଯେମିତି ତାଙ୍କରି ଛାତିରେ ଫାଟି ପଡୁଥିଲା । ରସଚିତ୍ରକ ବାବୁଙ୍କୁ ଶୁଭୁଥିଲା ପୁରୀ ଭିଟାମାଟିର ଡ଼ାକ ।






ମୋର ଏବେ ବି ନାଥ ଅଜାଙ୍କ କଥା ମନେ ଅଛି । ଖଦଡ଼ ଧୋତି, ଫତେଇ ସହ ଗାନ୍ଧୀ ଟୋପି ପିନ୍ଧି ବଙ୍କୁଲିବାଡ଼ି ଧରି ଗାଁର, ରବିବାରିଆ ଦାଣରେ ଯାଉ ଯାଉ, ସହର ଫେରନ୍ତା ଚାକିରିଆ ଟୋକାଙ୍କୁ ଅଜା, ଡାକ ଛାଡୁଥିଲେ- ''ଆରେ ଗୋଲାମ ନଗରୀର ଚାକର ପୁଏ, ଆରେ ତେଲ ମରାମରି କରିପାରୁଛ ନା ନାହିଁରେ ? ଆରେ ବ୍ରିଟିଶବାଲା ପରା ଧରି ଆସିଥିବା ତେଲଟାକୁ ଆମ ଦେଶଟାଯାକ ଢାଳି ଦେଇ ଯାଇଛନ୍ତି । ଆରେ ତେଲମାରି ଚାକିରୀ ବଞ୍ଚାଇ ରଖରେ, ନହେଲେ ଚକି କାଟିଲା ମାର୍କେ, ନାଚ୍ ଖାଇ ଖାଇ କେତେବେଳେ ତଳେ ପଡ଼ି ଯିବଟି'' । ପିଲାଦିନେ ହ୍ୟାପ୍ ପ୍ୟାଣ୍ଟ ପିନ୍ଧି ସ୍କୁଲ ଫେରନ୍ତା ବାଟରେ, ନାଥ ଅଜାଙ୍କ ଏ ଡ଼ାକ ଶୁଣି, ଆମେ ଦଉଡୁଥିଲୁ ବିଲେ ବିଲେ । ସେଦିନ ଅଜାଙ୍କ କଥା ଶୁଣି ହସ ଲାଗୁଥିଲା । ଆଉ ଆଜି, ମଣ୍ଡଳ, କଣା-କୁଜା, ନାରୀ, ଅନୁଜାତି, ଉପଜାତି ପ୍ରଭୃତିଙ୍କ ସଂରକ୍ଷଣ, ଆରକ୍ଷଣ, ବଶିକରଣ, ତୃପ୍ତିକରଣ ଆଦି ହଣାକଟା ବାୟୁ ମଣ୍ଡଳରୁ ମୁକ୍ତି ପାଇ, ଚାକିରୀରେ ଯୋଗଦେବା ପରେ, ଅଜାଙ୍କ କଥା ମୋର ବେଶି ମନେ ପଡୁଥିଲା । ଚାକିରୀ କଲେ, ତେଲର ଆବଶ୍ୟକ ହୁଏ, ସେକଥା ଶୁଣିଲେ ବି ସେଦିନ ବିଶ୍ୱାସ ହେଉ ନଥିଲା । ତେବେ ଚାକିରୀ ଯୋଗଦାନ ଦିନ ହିଁ, ବଡ଼ବାବୁଙ୍କ, ଅଫିସରଙ୍କ ପ୍ରତି ଭକ୍ତି, ନାଥ ଅଜାଙ୍କ ତେଲ ମରା ରହସ୍ୟକୁ ଉନ୍ମୋଚନ

କରିଦେଲା । ଅଫିସର୍, ପଣି ଆସୁ ଆସୁ, ଚଷମା ଫାଙ୍କରୁ ସ୍ନେହକାବୋଡ଼ିଧରା ଚାହାଁଣୀ ସହ ବଡ଼ବାବୁ, ଅଧା ଉଠୁ ଉଠୁ କହିଲେ- ''ଆମ ଉପର ରେଲୱେ ବୋର୍ଡ଼ର କର୍ମଚାରୀମାନେ ସାର୍, କ୍ୟାଣ୍ଟିନରେ ଖାଇବାବେଳେ କଥା ହେଉଥିଲେ- ଆରେ ମହାଳିକ ବାବୁଙ୍କଠାରୁ କାମ ଶିଖ, ବ୍ୟବହାର ଶିଖ । ଖାଲି ଏଠି ନୁହେଁ, ସାରା କ୍ୟାପିଟାଲରେ ଗୋଟିଏ କଥା, ଏମିତି ଅଫିସର୍ କୋଟିକରେ ଗୋଟିଏ ।'' ବଡ଼ବାବୁଙ୍କର ଅଫିସରଙ୍କୁ ଏଭଳି ଗଣେଶ ମାର୍କା ତେଲଯୁକ୍ତ ଉକ୍ତି, ମୋତେ ଭଲ ଲାଗିନଥିଲା । ଚାକିରୀ କରିବାର ସପ୍ତାହେ ନ ପୂରୁଣୁ, ଆଖି ଆଗକୁ ଆସିଯାଇଥିଲେ ଶିଶିର ଭାଇ, ବିପିନ୍ ଭାଇ ପ୍ରମୁଖ । ଅଫିସର୍ ବି ଅଜବ କିସମ୍‌ର ମଣିଷ । ନାଁ ଅପୂର୍ବ ମାହାଳିକ । ସାର୍‌ଙ୍କ ଅପିରିଷାରିଆ ମୁହଁ, ଭଣଭଣିଆ ଦେହ, ଟାଉଁଟାଉଁଆ କଥା, କେଟକେଟିଆ, ବଲବଲିଆ, କୁଛା ଶୁଳିଆ କାର୍ଯ୍ୟର ରୂପ ବର୍ଣ୍ଣନା କରି ବଡ଼ବାବୁ କହନ୍ତି- ବୁଝିଲ ପିଲେ, ଆମ ସାର୍‌ଙ୍କ ନାମ ଅପୂର୍ବ ରଖାଯିବାର ବହୁ କାରଣ ଅଛି । ଶୁଣ କଥା, ସାର୍‌ଙ୍କ ଜନ୍ମବେଳେ ଗାଁର ଠାକୁରାଣୀଙ୍କ ଠାରେ ଯେଉଁ ଅଖଣ୍ଡଦୀପ ଜଳାଯାଇଥିଲା, ତା'ର ଅପୂର୍ବ ଶିଖା ଦେଖି ସାର୍‌ଙ୍କ ନାମ ଅପୂର୍ବ ରଖାଗଲା । ଅତୁଲ ବାବୁ କୁହନ୍ତି- ଜନ୍ମବେଳେ କୁଆଡ଼େ ତାଙ୍କ ଦେହରୁ ଅପୂର୍ବ ଜ୍ୟୋତି ବାହାରୁ ଥିଲା । ଆଉ କେହି କେହି କହନ୍ତି- ବାଲ୍ୟକାଳର ଅପୂର୍ବ ଗୁଣ ହେତୁ, ତାଙ୍କ ନାମ ଅପୂର୍ବ ।'' ବଡ଼ବାବୁଙ୍କ କଥାକୁ ସମର୍ଥନ କରି ଶିଶିର ବାବୁ କହନ୍ତି- ''ବୁଝିଲେ ବଡ଼ବାବୁ, ସେଦିନ ଆମ ସାର୍‌ଙ୍କ ପ୍ରତି ଚେୟାରମ୍ୟାନଙ୍କ ଯେଉଁ କଦର୍ଯ୍ୟ ବ୍ୟବହାର ନା ! ତେବେ ସତ କହୁଛି ସାର୍, ଆପଣ ଖାଲି ହଁ କଲେ ମୁଁ ଛେପ ପକାଇ ପକାଇ ତାକୁ ପୋତି ପକାନ୍ତି । ଆଉ ଥିବ ନା, ଦୁ-ବ୍ୟବହାର କରିବ ?'' ଶିଶିରବାବୁଙ୍କ ଡବଲହରିଣମାର୍କା ତେଲମରା ଦେଖି, ବିପିନ୍‌ବାବୁ କହନ୍ତି- ''ବୁଝିଲେ ବଡ଼ବାବୁ- ଆମ ସାର୍‌ଙ୍କ ଭଳି କର୍ମଯୋଗୀ କାହାଁତି ? ସେ ଜଣେ ଧର୍ମଯୁଧିଷ୍ଠୀ । ଆମ୍ଭମାନଙ୍କ ପ୍ରତି ତାଙ୍କର ଅନାବିଳ ପ୍ରେମ ଅବର୍ଣ୍ଣନୀୟ ।'' ସେଦିନ ବଡ଼ବାବୁ, ଶିଶିରବାବୁ, ବିପିନ୍‌ବାବୁ ପ୍ରମୁଖଙ୍କ ତେଲମରା କଥାଶୁଣି ଯେତିକି ଆଶ୍ଚର୍ଯ୍ୟ ହୋଇ ନଥିଲି, ସେଦିନ ଏମ୍.ଡ଼ି.ଙ୍କ ପାଖରେ ମହାଳିକ ବାବୁଙ୍କ ଜଡ଼ାତେଲ ମୋତେ ବିସ୍ମୟାଭିଭୂତ କରି ପକାଇଥିଲା । ଝିଅ ବାହାଘର ନିମନ୍ତ୍ରଣ ଦେବାକୁ ଯାଇ, ସାର୍ କହୁଥିଲେ- ''ସତ କହୁଛି ଆଜ୍ଞା, ସାହେବଙ୍କ ମୋ ଘରେ ପାଦ ନ ପଡ଼ିଲା ପର୍ଯ୍ୟନ୍ତ, ମୋ ଝିଅ, ବୋହୂ ହୋଇ ଘରୁ ବାହାରିବନି । ଆପଣଙ୍କ ପଦରେଣୁ ତ, ତାହାର ପୁଞ୍ଜି । ତାକୁଇ ନେଇତ ସେ ସଂସାର କରିବ ।''

ଶୁଣାକଥା ୧୯୬୪ ମସିହାରେ ମହାଳିକ ବାବୁ ଦ୍ୱିତୀୟଶ୍ରେଣୀ ପାଠ ପଢୁ ପଢୁ, ଘରୁ ଲୁଚି, କଟକର ମାଲଗୋଦାମରେ ଭାଗ ପରିବା ବିକୁଥିଲେ । ସେତେବେଳକୁ ଚାକିରୀର ଅଭାବ ନାହିଁ । କାନୁନ୍‌ଗୋ ସାହେବଙ୍କ ଡ୍ରାଇଭର, ପରିବା କିଣୁ କିଣୁ, ପିଲାଟିର ବ୍ୟବହାର ଦେଖି ସାହେବଙ୍କ ଘରକୁ ଡାକି ଆଣିଥିଲା । ସେଇଠି ସେ ମାଳି, ପରେ ରୋଷେଇଆ, ପରେ ପରେ ଅର୍ଦ୍ଦଳି । ଆଜ ଏବେ ନିଜ ନିଷ୍ଠା, କର୍ମ ଦକ୍ଷତା ଓ ସାଧୁତା ବଳରେ ସେ ଅଫିସର୍ । ଭାଗ୍ୟକୁ, ସାର୍‌ଙ୍କ ଝିଅ ବାହାଘରକୁ ଯିବାର ପାଳି ପଡ଼ିଲା । ଅଫିସ୍‌ଗାଡ଼ି ଦୁଆରେ ପହଞ୍ଚିବା

ବେଳେ ମୁଁ ତଟସ୍ଥ ହୋଇଗଲି । ତିନିତାଲା ମୋଜାଇକ୍ କୋଠା । ଆଇ.ଏ.ଏସ୍. ଅଫିସର କାଇଦାରେ ଲନ୍, ନାମଫଳକ, ଡାହାଳ କୁକୁର, ଝୁଲାଦୋଳି ଓ ଲାଇଟ ପୋଷ୍ଟ । ବାହାଘରିଆ ଆନ୍ତରିକତାରେ ଘରକୁ ଟାଣି ନେଉ ନେଉ କହିଲେ- ବୁଝିଲ ଧନଞ୍ଜୟ, ଏ ଘର ମୋର ନୁହେଁ । ଏ ଘର ତୁମର, ସମାଜର, ଦେଶର । ସାର୍‌ଙ୍କ ଘରକୁ ଘେରି ରହିଥିଲା, ନଡ଼ିଆ-କଦଳୀର ବଗିଚା, ବାଡ଼ି ପଟେ ମାଛ ପୋଖରୀ । ଶେଷ ମୁଣ୍ଡରେ କାଠ ସାମଗ୍ରୀର ଏକପ୍ରକାର ୟୁନିଟ୍ । ପାଖଘର ତିନିଟିଯାକ ସାର୍‌ଙ୍କର ଭଡ଼ା ଲାଗିଛି । ବାହାଘରିଆ ଶୃଙ୍ଖଳାରେ ଚବିଶି ପ୍ରକାର ଖାଦ୍ୟ ଯଥା ମଟନ, ଚିକେନ୍ ଫ୍ରାଇ, ଫ୍ରାଏଡ୍ ରାଇସ୍ ଠାରୁ ଫ୍ରୁଟସ୍ ଯାଏଁ ସବୁ ବନ୍ଦୋବସ୍ତ ଥିଲା । ତେବେ ସବୁରି ଭିତରେ ସେଥିଲେ ପ୍ରକୃତରେ ଅନନ୍ୟ, ଅସାଧାରଣ । କେଉଁଦିନ କାନ୍ଧିଏ କଦଳୀ ବଡ଼ ଅଫିସର୍‌ଙ୍କୁ ଦେଉ ଦେଉ କହୁଥିଲେ- ''ଗାଁର ପ୍ରଜା ବେନୁଆ ଆଣିଥିଲା ସାର୍ । ପୁରା ଦେଶୀ । ଏହାକୁ ଖାଇଲେ କୁଆଡ଼େ ବ୍ଲଡ଼ପ୍ରେସର୍ ହୁଏନି । ରଂଗବତୀ କହିଲା- ସାହେବ୍‌ତ ବ୍ଲଡ଼ପ୍ରେସର୍ ରୋଗୀ । ତାଙ୍କୁ ଏ କଦଳୀ ଦିଅ । ସେ ସୁସ୍ଥ ରହିଲେ ସିନା ଆମେ ସୁସ୍ଥ ରହିବା ।'' ଆଉ କେଉଁଦିନ, ହାଣ୍ଡିଏ ମିଠା ବଢ଼ାଉ ବଢ଼ାଉ କହୁଥିଲେ- ''ଝିଅ ଘରୁ ଆସିଥିଲା ସାର୍ । ଝିଅ ଲେଖିଥିଲା, ଏ ସାଲେପୁର ମିଠା । ଯା'କୁ ଖାଇଲେ ଡାଇବେଟିସ୍ ହେବନି । ସାହେବଙ୍କ ପାଖକୁ ଏ ମିଠା ପଠାଇ ଦେବ । ଆପଣଙ୍କ ପଦରେଣୁକୁ ପୁଂଜି କରି ଭଲରେ ଚଳୁଛି ସାର୍ ।''

ସତରେ ମହାନ୍ତିକ ବାବୁଙ୍କ କାର୍ଯ୍ୟଧାରା ଅନ୍ୟମାନଙ୍କଠାରୁ ଭିନ୍ନ ଥିଲା । ଦିନେ ମୋତେ କହିଥିଲେ, ''ବୁଝିଲ ଧନଞ୍ଜୟ, ଘରୁ ବାହାରିବା ବେଳେ ଠାକୁରଙ୍କୁ ମାଗେ- ହେ ପ୍ରଭୁ, ମୋତେ ଶକ୍ତିଦିଅ, କାହାର ଉପକାର ନ କରିପାରିଲେ ବି କାହାର ଅପକାର ଯେପରି ନ କରେ ।'' ନୂଆବର୍ଷର ପହିଲା ଅଫିସିରେ ପିଅନଠାରୁ ଅଫିସର୍ ଯାଏଁ ସମସ୍ତଙ୍କ ସହ ହ୍ୟାଲୋ-ହାଏ କରି, ହ୍ୟାଣ୍ଡସେକ୍ କରନ୍ତି ସାର୍ । ଚାକିରୀର କର୍ମବ୍ୟସ୍ତତା ଭିତରେ, କାହାର କାଠ ଦରକାର, କାହା ଘର ମରାମତି ହେବ, କେଉଁ ଅଫିସର୍‌ଙ୍କ ଘରକୁ ଫ୍ୟାନ୍ ଯିବ, କେଉଁ ମନ୍ତ୍ରୀଙ୍କ ଅଫିସ୍‌କୁ କାର୍ପେଟ ଯିବ, ସବୁ ହିଁ ସେ ନିଜେ କରନ୍ତି । ଏକପ୍ରକାର ଦଉଡ଼ା ଭିତରେ ବାଟରେ ଯାଉଥିବା ମଣିଷକୁ 'କଣଭଲ', ନମସ୍କାର କରୁଥିବା ଲୋକଟିକୁ ''ଚାଲ-ଚାଲ'' ଓ ଗୁହାରୀ କରୁଥିବା ମଣିଷକୁ ''ହେବ-ହେବ'', କହୁ କହୁ ରିଟାୟର୍ଡ଼ ବୟସରେ ପହଞ୍ଚିଗଲେ ସାର୍ । ଚାକିରୀ ସରିବାର କିଛି ମାସ ପୂର୍ବରୁ ପୁଅକୁ ସାଥିରେ ଧରି ଅଫିସି ଆସିଥିଲେ ସାର୍ । ବଡ଼ ସାହେବଙ୍କ ରୁମ୍‌କୁ ପୁଅକୁ ନେଉ ନେଉ କହୁଥିଲେ- ''ଆପଣଙ୍କ ଝିଅର ମାଟ୍ରିକ୍ ପରୀକ୍ଷା ଖବର ପାଇ, ରଂଗବତୀ ବ୍ୟସ୍ତ ହୋଇ ପଡ଼ିଲା ସାର୍ । କଣ କହିଲା ଜାଣନ୍ତି- ସାର୍‌ଙ୍କ ଝିଅ କଣ ମୋ ଝିଅ ନୁହେଁ ? ପରୀକ୍ଷାରେ ଖରାପ ହେଲେ, ଲୋକେ କଣ କହିବେ ? ମୋ ପୁଅ ଚକ୍ରତୀର୍ଥ, ଏକନମ୍ବର ସାଇନସ୍ ଷ୍ଟୁଡ଼େଣ୍ଟ ସାର୍ । ତା' ଦାୟିତ୍ୱ ଗଣିତ ଓ ବିଜ୍ଞାନର । ଦେଖିବେ ସାର୍, ଝିଅଟା କିଭଳି ମାର୍କ ଟାଣୁଛି । ତା ଛଡ଼ା, ଆପଣମାନଙ୍କ ପିଲା ଭଲ ନ ପଢ଼ିଲେ, କିଏ ଅଫିସର୍ ହେବ ??''

ସାର୍‌ଙ୍କ ରିଟାୟର୍ଡ଼ ଦିନ ପାଖେଇ ଆସିଲା । ହଠାତ୍ ଦିନେ ବଡ଼ ସାହେବଙ୍କ ଅପାର ଦୟାରୁ, ସାର୍‌ଙ୍କ ପୁଅ ଚକ୍ରଧାରୀ, ଅଡ଼ିଟର୍ ଭାବେ ଚାକିରୀରେ ଯୋଗ ଦେଲା । ରିଟାୟର୍ଡ଼ ଦିନ ଭୋଜିଭାତର ଆୟୋଜନ ହେଲା । ସାର୍‌ଙ୍କ ସମୟର ବହୁ ପୁରାତନ ଅଫିସର୍ ମଧ ବିଦାୟ ଉତ୍ସବରେ ଯୋଗ ଦେଇଥିଲେ । ବିଦାୟ ସଭାରେ ସଭାପତିତ୍ୱ କରି ବଡ଼ ସାହେବ କହିଲେ- ''ମହାନ୍ତିକ ବାବୁଙ୍କ ପରେ, ଏକ କର୍ମମୁଖର ଯୁଗର ପରିସମାପ୍ତି ଘଟିବ । ସେଥିଲେ, ଏକାଧାରାରେ କର୍ମରେ ଧନୁର୍ଦ୍ଧର ଅର୍ଜୁନ, ବ୍ୟବହାରରେ ଶ୍ରୀକୃଷ୍ଣ ସହଯୋଗରେ କର୍ଣ୍ଣ ଓ ସମ୍ମାନରେ ମାନୀ ଦୁର୍ଯ୍ୟୋଧନ । ବ୍ରାହ୍ମଣ ନ ହୋଇ ବି, ପରମନ ଜାଣି, ସେମାନଙ୍କ କାମକରି ସେ ଥିଲେ ବ୍ରାହ୍ମଣ । ପାଇଖାନା ସଫା କରିବାରେ ତାଙ୍କର ଘୃଣା ନଥିଲା କି, କାହାଘରକୁ ବୋଝ ବୋହିବାରେ ତାଙ୍କର କୁଣ୍ଠା ନଥିଲା । ତାଙ୍କର ବିଦାୟ ପୂର୍ବରୁ ତାଙ୍କର ପ୍ରତିଛବି ଚକ୍ରଧାରୀଙ୍କୁ କର୍ମସଂସ୍ଥାନ ଦେଇ ମୁଁ କିଞ୍ଚିତ ଧନ୍ୟ ହୋଇ ଯାଉଛି ।'' ଏମିତି ବହୁ ବହୁ ନେତା, ଅଫିସରଙ୍କ ଭାଷଣ ପରେ ବଡ଼ବାବୁ ଛାତିରୁ କୋହ ଉଠାଇ, ଆଖିରୁ ଲୁହଢ଼ାଳି କହିଲେ- ''ସାର୍‌ଥିଲେ, ମର୍ଯ୍ୟାଦା ପୁରୁଷ ରାମଚନ୍ଦ୍ର । ସତ୍ୟରକ୍ଷା, ପରୋପକାର ସହ, ଆମ୍ଭ ଭଳି ଅକିଞ୍ଚନମାନଙ୍କ ସମସ୍ତ କାର୍ଯ୍ୟଗତ ଦୋଷ, ମାସକୁ ପାଞ୍ଚଦିନ ଅନୁପସ୍ଥିତି, ସବୁକୁ ଉଦାର ହୃଦୟରେ କ୍ଷମା ଦେଇ ସେ ଆଜି ମହାନ୍ । ତାଙ୍କ ବିଦାୟ, ଆମକୁ ପିତୃ ବିୟୋଗର ଦୁଃଖ ଦେଉଛି ।''

ଉତ୍ସବ ସଭାର ଶେଷ ପର୍ବରେ ନିଜର କର୍ମମୟ ଜୀବନ ସଂପର୍କରେ କହିବାକୁ ଯାଇ ମହାନ୍ତିକ ବାବୁ କହିଲେ- ''ମୁଁ କିଛି ନୁହେଁ । ମୁଁ ଆପଣମାନଙ୍କର ବିଶ୍ୱସ୍ତ କୁକୁର । ମୁଁ ଆପଣଙ୍କୁ ଜଗେ, ରକ୍ଷାକରେ ଓ ଆପଣଙ୍କ ଅଇଁଠା ଖାଏ । ପରିବେଶର ଶୁଦ୍ଧତା ପାଇଁ, ମୋର ଏ ଅଇଁଠାଖିଆ ପଦକ୍ଷେପ, ନିମିତ୍ତ ମାତ୍ର । ସାରାଜୀବନ ଆପଣଙ୍କ ସେବା କରି, ଆପଣଙ୍କ ଅନୁରୋଧ ରକ୍ଷା କରି କରି, ମୁଁ ଧନ୍ୟ ହୋଇ ଯାଇଛି । ତେବେ ମୋର ବିଶ୍ୱାସ, ଆପଣମାନେ ଆଜିର ବିଦାୟ ବେଳରେ, ମୋର ଏକମାତ୍ର ଅନୁରୋଧ ରକ୍ଷା କରିବେ । ମୋର ମାଗୁଣି, ଆପଣମାନଙ୍କ ପ୍ରତି ମୋର ଅନବଦ୍ୟ ସେବାର ସ୍ମାରକୀ ସ୍ୱରୂପ, ଏହି କାର୍ଯ୍ୟାଳୟ ପରିସରରେ ମୋର ଏକ ପ୍ରତିମୂର୍ତ୍ତି ସ୍ଥାପିତ ହେବ ।'' ଉତ୍ସବ ସରିବା ରାତି, ସତରେ ମୋ ପାଇଁ ଥିଲା ଏକ ବିଚ୍ଛେଦର ରାତ୍ରୀ । ମହାନ୍ତିକ ବାବୁଙ୍କ କଥା ଭାବି ଭାବି ଶୋଇଯାଇ ମୁଁ ଦେଖୁଥିଲି- ବଡ଼ବାବୁଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ ହେଉଛି । ବଡ଼ ବଡ଼ ଅଫିସରଙ୍କ ଠାରୁ ବଡ଼ବାବୁ ଯାଏଁ ସଭିଏଁ ପ୍ରତିମୂର୍ତ୍ତିରେ ପୁଷ୍ପମାଲ୍ୟ ଦେଉଛନ୍ତି । ଧଳା ୟୁନିଫର୍ମ ଓ ଧଳା କ୍ୟାପ୍ ପିନ୍ଧି, ଆମେ ମହାନ୍ତିକ ବାବୁଙ୍କ ଉଦ୍ଦେଶ୍ୟରେ, ତାଙ୍କର ତେଲମରା ନୀତି ପାଇଁ, ଦେଶାତ୍ମକବୋଧକ ସଂଗୀତ ଗାଉଛୁ ।

ସ୍ୱପ୍ନଭାଙ୍ଗିବା ପରେ, ଆଜି ଖୁବ୍ ମନେ ପଡ଼ୁଥିଲେ ନାଥ ଅଜା ।






ସଟଲ୍‌ଗାଡ଼ିର ଅପରିଚ୍ଛନ୍ନ, ବେସିନ୍‌ରେ ଥୁ ଥୁ ହୋଇ ପାନସିଠା ଗୁଡ଼ାକ ଗାଳି ପକାଇ ଗଳା ସଫା କରୁ କରୁ କହିଲେ ଜ୍ଞାନେଶ୍ୱର ଓରଫ୍ ଜ୍ଞାନୀବାବୁ- ''ବୁଝିଲ, ତୁମକୁ ମିଛ, ମୋତେ ସତ ମୋ ନାନୀ କହୁଥିଲା, ପୁଅଟିଏ ପାଇଁ ମୋ ବୋଉର ମୁହଁ ଶୁଖା ଦେଖି, ଦିନେ ତା'ଶାଶୁ ହରଦ୍ୱାରରୁ ଆସିଥିବା ମନାଷୀ ଷଣ୍ଢ ପାଖକୁ ଯାଇ, ଉଦୁଉଦିଆ ଖରାବେଳଟାରେ ଷଣ୍ଢ ଗୋଡ଼ତଳେ ଲମ୍ୱ ହୋଇ ପଡ଼ି କାନ୍ଦି କହିଲା- ''ହେ ଷଣ୍ଢ ଦେବତା, ମୋ ବୋହୂକୁ ପୁଅଟେ ଦିଅ''। ଷଣ୍ଢ ନେଇ ଆସିଥିବା ବିହାରୀ ଲୋଲୋ ଯାଦବ, ବୁଢ଼ୀ ହାତରୁ ଘାସ ଓ ଚାଉଳ ଷଣ୍ଢକୁ ଦେଇ, ତା' କାନ ପାଖରେ କଣ ଫୁସ୍ ଫୁସ୍ ହୋଇ କହିଲା । ମାରିଲା ଷଣ୍ଢ ହମ୍ବାରଡ଼ି । ବିହାରୀ କହିଲା ''ହେ ମାଈ ! ମତ୍‌ରୋ । କ୍ୟା ତୁମ୍ କୋ ବେଟା ଚାଇଏ କ୍ୟା ? ଯାଓ, ତୁମାରା ଘରମେଁ ଲଡ଼କା ଇସି ସାଲ୍ ଜରୁର୍ ଆୟେଗା । ଖୁବ୍ ବିଦ୍ୱାନ୍ ହୋଗା । ଦେଶ୍ କା ବଡ଼ା ନାମ୍ କରେଗା ।'' ସତକୁ ସତ ବରଷେ ନ ଯାଉଣୁ, ମୁଁ କୁଆଡ଼େ ଜନ୍ମ ହେଲି ଓ ମନାଷୀ ଷଣ୍ଢଙ୍କ ଆଶୀର୍ବାଦକୁ ସମ୍ମାନ ଦେଇ, ମୋ ନାଁ ରଖାଗଲା ଜ୍ଞାନେଶ୍ୱର । ସତକୁ ସତ ଜାତକ କଷାରୁ ଜ୍ୟୋତିଷେ କହିଲେ ପିଲାର

ରାଜଯୋଗ ଅଛି, ବିଦେଶ ଭ୍ରମଣ ଯୋଗ ଅଛି । ଗୋପୀ ନାହାକେ ଆଉ ପାଦେ ଆଗେଇ ଯାଇ ଜଣେଇ ଦେଇଥିଲେ, ଠିକ୍ ଦଶବର୍ଷ ପରେ ପୁଅଗୋଟେ ବିଶିଷ୍ଟ ଗବେଷକ ହୋଇ ବାହାରିବ । ଏକଥା ମନେ ପଡ଼ିଲାରୁ ମନ ମୋର ଖାଲି ଛାଟିପିଟି ହେଲା । ଉପାୟ ପାଇଲି ଚାକିରୀରୁ ଛୁଟି ନେଇ ଗବେଷଣା କାମ ଆରମ୍ଭ କରିବି । ଗୁଳ୍ମରୁ ପେଟ୍ରୋଲ ବାହାର କରିଥିବା ରାମା ପିଲାଇଙ୍କୁ ଗୁରୁ କରି ଆରମ୍ଭ କଲି ଗବେଷଣା ॥

ଦିନେ, ଅଫିସ୍‌ରୁ ଦୀର୍ଘ ଦୁଇମାସିଆ ଛୁଟି ନେଇ, ଗବେଷଣା କାମ ଆରମ୍ଭ କଲେ ଜ୍ଞାନେଶ୍ୱର ବାବୁ । ହଠାତ୍ ସଦ୍ୟ ପ୍ରକାଶିତ ''ରାମାପିଲାଇଙ୍କ ପେଟ୍ରୋଲ ଉଦ୍ଭାବନ ତ୍ରୁଟିଯୁକ୍ତ'' ଶୀର୍ଷକ ସମ୍ବାଦ ପଢ଼ିବାରେ, ସେ ଚିନ୍ତାକଲେ ଯଦି ସେ ଗୁରୁ ରାମାପିଲାଇଙ୍କ ତ୍ରୁଟିକୁ ସୁଧାରି ପେଟ୍ରୋଲ ତେଲ ବାହାର କରି ପାରନ୍ତେ, ତେବେ କଣ ନ ହୁଅନ୍ତା !! ସ୍କୁଟର, ବସ୍, ଟ୍ରକ୍, ଟ୍ରେନ୍‌ଠାରୁ ଏୟାର ଇଣ୍ଡିଆ ବାଲା ସଭିଏଁ ଆସନ୍ତେ, ଭାରତ, ପୃଥିବୀର ଶ୍ରେଷ୍ଠ ଧନୀରାଷ୍ଟ୍ର ହୋଇଯାନ୍ତା । ଇରାନ୍, ଇରାକ୍‌ର ଶାସକଙ୍କଠାରୁ କ୍ଲିଣ୍ଟନ୍ ପ୍ରଶାସକ ତାଙ୍କୁ ନିମନ୍ତ୍ରଣ କରନ୍ତେ !!! ସ୍ୱାମୀଙ୍କ ଏ ଗବେଷଣିଆ ସାଧନା ଦେଖି, ପ୍ରାଣପ୍ରିୟା ପତ୍ନୀ କହିଲେ, ବୁଝିଲ- ମୁଁ ତୁମ ପଛରେ ଅଛି, ମାଡ଼ିଯାଅ । ତୁମେ ଯେତେବେଳେ ପଦ୍ମଭୂଷଣ, ବିଭୂଷଣ ଇତ୍ୟାଦି ପାଇବ ବା ବିଦେଶରେ ପୁରସ୍କୃତ ହେବ, ମୁଁ ତୁମ ପ୍ରେରଣା ବୋଲି ଶେଷଶେଷିଆ ଦେଖି ପଦଟେ କହିଦେବ । ଟି.ଭି.ରେ, ପେପରରେ ପିଲାଏ ଦେଖି କେତେ ଖୁସି ନହେବେ ? ମୁଁ ବି ସେତିକିରେ ତରିଯିବି ।

ସେଦିନ ଅର୍ଦ୍ଧରାତ୍ରୀରେ ଜ୍ଞାନର ଈଶ୍ୱର ଜ୍ଞାନେଶ୍ୱରବାବୁ, ଗବେଷଣା କରି ଏ ଦରିଦ୍ର ଭାରତକୁ ଧନୀ ରାଷ୍ଟ୍ର କରିବାର ବଜ୍ର ଶପଥ ସହ ସମାଜ ତଥା ପୃଥିବୀରେ ଅର୍ଥନୈତିକ ବିପ୍ଳବ ପାଇଁ, ଆରମ୍ଭ କଲେ ଧମାଧମ୍, ଧାଁ ପଗଡ଼ ଗବେଷଣା । ସେ ପାଲଟି ଗଲେ ଗାମ୍ଭୀର୍ଯ୍ୟ ମୁଖଧାରୀ ଗବେଷଣିଆ ବାବୁ । ରାତି ଅଧରେ କଞ୍ଚା ବାଉଁଶ, କିରୋସିନ, ଡିଆସିଲି, ମେଞ୍ଚେ ଚିରାକନା ସହ ପାଣି ବାଲଟିଏ ଧରି ଆରମ୍ଭ କଲେ ଦେଶୀୟ ଗବେଷଣା । ଚାଲିଲେ ତାଳବଣିଆ, ଝାଉଁବଣିଆ, ଗିନାରୀବନ୍ତଠାରୁ ଜଗନ୍ନାଥ ବଲ୍ଲଭ, ସବୁଗଛ ପାଖେ ନିଆଁହୁଳା ମୁହାଁଇ ମୁହାଁଇ । ହେଲେ କେଉଁଗଛ, ନିଆଁହୁଳାରୁ ନିଆଁକୁ ଛଡ଼ାଇ ନେଲାନି କି, ଗଛ ନିର୍ଗତ ତୈଳ, ପାଣି ବାଲଟିରେ ପଡ଼ିଲାନି । ପାହାନ୍ତା ପହରେ ମୁହଁ ଶୁଖାଇ ଘରକୁ ଫେରିଲେ ଜ୍ଞାନେଶ୍ୱରବାବୁ ।

ସଦ୍ୟନିର୍ମିତ ଗବେଷଣା ଗୃହରେ ନୀରବରେ ବସିଥିବା ବାବୁଙ୍କୁ ଦେଖି ଧର୍ମପତ୍ନୀ କହିଲେ- ନିରାଶ ହୁଅନି, ଆଗେଇ ଚାଲ । ତୁମର କଣ ରବି ଠାକୁରଙ୍କ 'ଏକଲା ଚଲୋ' ଗୀତ ମନେ ପଡୁନି ? ସଫଳତା ଆଜି ନ ମିଳିଲେ, କାଲି ମିଳିବ । ଦୀର୍ଘ ସାତଦିନ ଧରି

ନିବୁଜଘରେ ପୁରୁଣା ବହି, କାଗଜଗୁଡ଼ିକୁ ଅଣାଳି ଲାଗିଲେ ସେ । ସକାଳୁ ସକାଳୁ ବାଇଚି, ଦଉଡ଼ି ଓ ଡିଆସିଲି ଧରି ସାହି- ଗଳି ବୁଲା ଆରମ୍ଭ କଲେ ବାବୁ । ସମସ୍ତଙ୍କ କୂଅରେ ପଡ଼ିଲା ଦଉଡ଼ି ଲଗା ବାଲଟି । ଚାଲିଲା ପାଣିକଢ଼ା ଅଭିଯାନ । ବାବୁଙ୍କ ବିଶ୍ୱାସ, ନିଶ୍ଚୟ କୋଉ କୂଅ ପାଣିରେ ତୈଳଅଂଶ ଭାସି ଉଠିବ । ସରକାରଙ୍କୁ ଲେଖାଯିବ । ପେଟ୍ରୋଲିୟମ ମନ୍ତ୍ରୀ ନିଜେ ବଡ଼ ବଡ଼ ବୈଜ୍ଞାନିକଙ୍କ ସହ ଆସିବେ । ହେଲେ କୂଅ ଉଦ୍ଭଳାରୁ ତେଲ ମିଳା ଆଶାରେ ବିଫଳ ହେଲେ ଜ୍ଞାନେଶ୍ୱର ବାବୁ ।

ଦୁଇଦୁଇଥର ବିଫଳତାରେ ଭାଙ୍ଗିପଡ଼ିଥିବା ବାବୁଙ୍କ ମୁହଁରେ ଆଶାର ଜଳ ଛିଞ୍ଚିଲେ ଧର୍ମପତ୍ନୀ ମହାଶୟା । କହିଲେ- "ଗାଲିଲିଓଙ୍କଠାରୁ ନିଉଟନ୍‌ଙ୍କ ପର୍ଯ୍ୟନ୍ତ କେତେ କଷ୍ଟ କରି ନଥିଲେ । ତୁମର ତ ଏ ଆରମ୍ଭ ମାତ୍ର । ତୁମେ ଏଣିକି ନିର୍ଜୀବ ଛାଡ଼ି ସଜୀବ ଉପରେ ଜୋରଦାର୍ ଗବେଷଣା କର ।" ପୁଣି ରାତି ରାତି, ତତ୍ତ୍ୱ ପୁସ୍ତକ ଗୁଡ଼ିକ ଉପରେ ଆଖି ବୁଲେଇ ନେଲେ ବାବୁ । ସକାଳୁ ସକାଳୁ ଚାଲିଲେ କ୍ୟାପିଟାଲ । ଦିନ ଯାଇ ସଂଜ ଆସିଲା । କ୍ୟାପିଟାଲର ରାଜମହଲ, କଳ୍ପନା, ମାଷ୍ଟର କ୍ୟାଣ୍ଟିନ୍, ରୂପାଲୀ ସବୁଠି ଲାଗିଲା ଧାଡ଼ି ଧାଡ଼ି ସ୍କୁଟର, କାର । ତଳକୁ ଓହ୍ଲାଇ ଆସିଲେ ହଳ ହଳ ସ୍ୱାମୀ-ସ୍ତ୍ରୀ, ପ୍ରେମିକ ପ୍ରେମିକା । ସମସ୍ତଙ୍କ ଗତି ଦୋକାନ ଆଡ଼କୁ । ଦୋକାନ୍‌ରେ ରୋଲ୍-ଏନ୍-ରୋଲ୍ ଓ ଚାଇନିଜ୍ ଫାଷ୍ଟ ଫୁଡ୍ ଫଳକ । ଗରାଖ ଭିଡ଼ କମି ଆସିଲା ପରେ, ନିରୋଳା ଦେଖି ଜ୍ଞାନେଶ୍ୱର ବାବୁ, ଚାଓବାଲାକୁ ପଚାରିଲେ- "ହଇଓ ଚାଓବାବୁ, ଏସବୁ ଖାଦ୍ୟର ଏତେ ଚାହିଦା କାହିଁକି ?" ହସିଲା ଚାଓବାଲା । ହସୁ ହସୁ କହିଲା- "ଗୋଟେ ପ୍ଲେଟ ମିକ୍ସଡ୍ ଖାଅ ବାବୁ, ସବୁ ବଳେ ବଳେ ଜାଣିଯିବ ।" ବାବୁଙ୍କ ଇଚ୍ଛାକ୍ରମେ ଚଟାପଟ୍ ତିଆରି ହୋଇଗଲା ଚାଓମିନ୍ । ପ୍ଲେଟଟାକୁ ବଢ଼ାଉ ବଢ଼ାଉ କହିଲା ଚାଓବାଲା- "ସାର୍ ଏ ଚାଓମିନ୍, ଶୋଇଯାଇଥିବା ଶିରାପ୍ରଶିରାକୁ ତୁରନ୍ତ ସକ୍ରିୟ କରେ, ମନରେ ଅଫୁରନ୍ତ ଫୂର୍ତ୍ତି ଆଣେ । ଦେହର ବିଭିନ୍ନ ଲୋମକୂପରେ ତୈଳ ଅଂଶ ଜାଗ୍ରତ ହୁଏ, ଯଦ୍ୱାରା ମଣିଷର ବାଳ ପାଚେନି କି, ଅକାଳ ବାର୍ଦ୍ଧକ୍ୟ ଗ୍ରାସେନି ।" ଲଜିଂକୁ ଫେରିଲେ ଜ୍ଞାନୀବାବୁ । ସତକୁ ସତ ପୂର୍ବଠାରୁ ମନଟା ଟିକେ ଫୂର୍ତ୍ତି ଲାଗୁଥିଲା । ସକାଳୁ ମନଟା ଖୁବ୍ ହାଲୁକା ଲାଗିଲା । ଏତେଦିନ ପରେ ତୈଳର ସାମାନ୍ୟ ସନ୍ଧାନ ମିଳିଛି । ତେବେ ପୂର୍ଣ୍ଣ ସଫଳତା ପାଇଁ, ପୁସ୍ତକ ଓ ସଂବାଦପତ୍ରମାନଙ୍କରୁ ମିଳିଥିବା ତଥ୍ୟ ଅନୁଯାୟୀ ବାବୁ ଚାଲିଲେ କ୍ୟାପିଟାଲର ପରିବହନ, ଜଂଗଲ, ସ୍ୱାସ୍ଥ୍ୟ, ତହସିଲ, ମ୍ୟୁନିସପାଲିଟି ତଥା ଟାକ୍ସ ଅଫିସମାନଙ୍କୁ । ସେଠାକାର ପରିବେଶ ଦେଖି କ୍ଷଣିଏ ରହିଗଲେ ଜ୍ଞାନୀବାବୁ । ପିଅନଠାରୁ ଅଫିସରଯାଏଁ, ଯିଏ ଯେଉଁ ଅଫିସରଙ୍କ କାର୍ଯ୍ୟରେ ବ୍ୟସ୍ତ । ପାହାନ୍ତା ପହରୁ ରାତି ଅଧଯାଏଁ, ସଭିଏଁ ଘରୋଇ କାର୍ଯ୍ୟରେ ବ୍ୟସ୍ତ ।

ନୀତି-ଅନୀତି, ଭଲ-ମନ୍ଦ ସବୁରି ଊର୍ଦ୍ଧ୍ୱରେ ଉପରିସ୍ଥ ସାହେବମାନେ । ସେଠି ବାଡ଼ି କଦଳୀଠାରୁ ବଡ଼ମାଛ, ବନାରସୀ ପାଟ ଠାରୁ ପୁରୀ ମହାପ୍ରସାଦ ନୀତି ଦିନିଆ କାରବାର । ସପ୍ତାହେ ଧରି ଗବେଷଣା କରି କରି ହାଲିଆ ହୋଇ ପଡ଼ିଥିଲେ ହେଁ, ସଫଳତାକୁ ନେଇ ଘରକୁ ଫୋନ୍ ଲଗାଇଲେ ଜ୍ଞାନେଶ୍ୱର ବାବୁ । ଧର୍ମପତ୍ନୀଙ୍କ ହ୍ୟାଲୋ ଶବ୍ଦ ନ ସରୁଣୁ ବାବୁ କହିଲେ- ବୁଝିଲ, ତୁମ ପ୍ରେରଣା ମୋତେ ସଫଳତା ଆଣି ଦେଇଛି । ଦୁଇ ସ୍ତରର ସଫଳତା ମିଳିଲାଣି । ଟିକେ ଦିଅଁକୁ ଡାକ, ଏ ତେଲର ଷ୍ଟୋରେଜ୍ ପାଇଁ ମୁଁ ଯେପରି ସଫଳତା ପାଏ ।

ଗବେଷଣା ଚିନ୍ତାରେ, ପୁରା ରାତିଟା ଚେଇଁ ଚେଇଁ କଟିଗଲା । ସକାଳୁ କିଛି ଅର୍ଥବ୍ୟୟରେ ମହାମନ୍ତ୍ରୀଙ୍କ ପିଅନକୁ ହାତକରି ଚାମର ପାସ୍‌ଟାଏ ଯୋଗାଡ଼ କରିଦେଲେ ବାବୁ । ନୂତନ ପୋଷାକ, ଟାଇ, ଯୋତା ସହ ମହାମନ୍ତ୍ରୀଙ୍କୁ ଏକାକୀ ସାକ୍ଷାତ କଲେ ସେ । ନିଭୃତରେ ନିଜର ଗବେଷଣା ବିଷୟ ବଖାଣି ଗଲେ ମହାମନ୍ତ୍ରୀଙ୍କ ଆଗରେ । ପ୍ରୀତ ହେଲେ ମହାମନ୍ତ୍ରୀ । ଯୁବ ସୁଲଭ ହସଟାଏ ହସି କହିଲେ- "ତୁମ ଗବେଷଣା, ନିଶ୍ଚେ ଦିନେ ଏ ଖଟିଖିଆ ମୂଲିଆଙ୍କ କାର୍ଯ୍ୟରେ ଲାଗିବ । ତୁମ ସାଧନା ବଳରେ ଦିନେ ଏ ଓଡ଼ିଶା ହସିବ, ଏ ଭାରତ ହସିବ । ଆଉ ତୁମେ ଦିନେନା ଦିନେ ନୋବେଲ୍ ପୁରସ୍କାର ପାଇବ । ହେଲେ ମୁଁ କଣ ସାହାଯ୍ୟ କରିବି କୁହନ୍ତୁ ।" ମୁହଁ ଖୋଲିଲେ ଜ୍ଞାନୀବାବୁ - ମୋ ସହ ଆପଣଙ୍କର ଏକତ୍ର ରାତ୍ରୀ ଭୋଜନର ସୌଭାଗ୍ୟ ଟିକିଏ ଦରକାର ସାର୍ ।

ମହାମନ୍ତ୍ରୀ ଖୁସିର ସହ ରାଜି ହୋଇଗଲେ । ରାତିରେ ହୋଟେଲର ନିଭୃତ କକ୍ଷରେ ରାତ୍ରୀ ଭୋଜନ ଆରମ୍ଭ ହେଲା । ନିଜର ଗବେଷଣା ସଂପର୍କରେ ଇତିହାସ କହୁ କହୁ, ମହାମନ୍ତ୍ରୀଙ୍କୁ କିଛି ବିଦେଶୀ ପାନୀୟ ବଢ଼ାଇଦେଲେ ଜ୍ଞାନୀବାବୁ । ଦେଶର ଉନ୍ନତି ପାଇଁ ଜଣେ ସଫଳ ବୈଜ୍ଞାନିକର ସହଯୋଗ କରି ଧନ୍ୟ ହୋଇଥିବା ମହାମନ୍ତ୍ରୀ ଖୁସିରେ କହିଲେ- "ବୁଝିଲ ଜ୍ଞାନୀବାବୁ, ଏ ଗବେଷଣାର ସଫଳ ରୂପାୟନ ପାଇଁ ତୁମେ ଆମେରିକା ଯାଅ, ଲଣ୍ଡନ ଯାଅ, ସବୁ ଖର୍ଚ୍ଚ ମୋର ମାନେ, ମୋ ଦେଶର । ଏଠାରେ ତୁମର ସ୍ତ୍ରୀ ଓ ଝିଅ, ସେମାନଙ୍କ ସବୁ ଦାୟିତ୍ୱ ମୋର ।" କହୁ କହୁ ହସି ଉଠିଲେ ମହାମନ୍ତ୍ରୀ । ହସରୁ ଆରମ୍ଭ ହେଲା ଦୁର୍ନୀତିଗ୍ରସ୍ତ ଅଫିସରଙ୍କ ବିରୁଦ୍ଧରେ କ୍ରୋଧ, କ୍ରୋଧରୁ ମରୁଡ଼ି ପ୍ରପୀଡ଼ିତ ମଣିଷଙ୍କ ପାଇଁ କାନ୍ଦ । କାନ୍ଦରୁ ବାନ୍ତି । ବାନ୍ତି କରି କରି ଶେଷକୁ ବେହୋସ୍ ହୋଇଗଲେ ମହାମନ୍ତ୍ରୀ । ମହାମନ୍ତ୍ରୀଙ୍କୁ ବେହୋସ୍ ଦେଖି ଆଗରୁ ନେଇଥିବା ପଲିଥିନ୍‌ରେ ସଦ୍ୟବାନ୍ତିରୁ କିଛି ପୂରାଇ, ରାତାରାତି ପୁରୀ ଧାଇଁଲେ ଜ୍ଞାନୀବାବୁ । ସ୍ତ୍ରୀ ପିଲାଙ୍କୁ କଥା ନକହି, ଗବେଷଣା ଗୃହରେ ଟେବୁଲ ଲାଇଟ୍ ଲଗାଇ ଆରମ୍ଭ କଲେ ଗବେଷଣା ।

ତିନିଦିନ ପରେ ସାମ୍ବାଦିକ ସମ୍ମିଳନୀ ଡକାଗଲା । କେନ୍ଦ୍ର ସରକାରଙ୍କୁ ଦେଉଥିବା ଗବେଷଣା ଫାଇଲକୁ, ଭର୍ତ୍ତିପୂର ସାମ୍ବାଦିକଙ୍କ ଆଗରେ ପାଠ କଲେ ଜ୍ଞାନୀବାବୁ । "ରୋନାଲଡ୍ ରସ୍‌ଙ୍କ ପରେ ମୁଁ ସେହି ଲୋକ ଯେ ଆଜି ଖୋଜି ଖୋଜି ପାଇଛି । ମୋର ଏ ସଫଳତା ପାଇଁ ମୁଁ ଧନ୍ୟବାଦ ଦେଉଛି, ଚୀନର ସେ ମହାନ ଶାସକ ଚାଉଏନ୍‌ଲାଇଙ୍କୁ, ଯେ ଚୀନ-ଭାରତ ଯୁଦ୍ଧପରେ, ଏ ଭାରତମାଟିରେ ନିଜ ନାମରେ ଚାଓମିନ୍ ଫାଷ୍ଟଫୁଡ୍ ଛାଡ଼ି ଯାଇଛନ୍ତି । ସେ ଏଭଳି ଏକ ଖାଦ୍ୟ, ଯାହା ଖାଇଲେ ମନରେ ବେଗ ବଢ଼େ । ଶୋଇ ରହିଥିବା ଶିରାପ୍ରଶିରା ଗୁଡ଼ାକ ଜେଗିଁ ଉଠନ୍ତି । ବୁଦ୍ଧି ପ୍ରଖର ହୁଏ । ଏଣୁ ତାକୁ ଖାଉଥିବା ମଣିଷମାନଙ୍କ ମାଂସରୁ ନିର୍ଗତ ତୈଳର ବେଗ ଖୁବ୍ ଚଞ୍ଚଳତର । ଦ୍ୱିତୀୟରେ ମୁଁ କୃତଜ୍ଞତା ଜଣାଉଛି, ସେ ଫିରିଙ୍ଗି ସରକାରଙ୍କୁ । ଯେ ଭାରତରେ ତେଲମରା ନୀତି ଛାଡ଼ି ଯାଇଛନ୍ତି । ଆଜି ସାର୍, ସାହେବ, ହଜୁର ଶବ୍ଦ ଭିତରେ, କଦଳୀ, ମାଛ, ପାଟ, ପ୍ରସାଦର ଆଦାନପ୍ରଦାନ ମଧ୍ୟରେ ମଣିଷର କଥାରୁ ତେଲ ସୃଷ୍ଟି ହୋଇ ପାରିଛି । ଅଫିସରଙ୍କ ଦେହରୁ, ଚାଓମିନ୍ ଖାଉଥିବା ମଣିଷମାନଙ୍କ ଦେହରୁ ବାହାରୁଥିବା ତେଲ, ସାଧାରଣ ପେଟ୍ରୋଲ-ଡିଜେଲର ଶୁଦ୍ଧତା ଓ ସ୍ୱଚ୍ଛତାଠାରୁ ଯଥେଷ୍ଟ ବେଶୀ । ଏଣୁ ଏହି ମଣିଷମାନଙ୍କ ଦେହରୁ ବାହାରୁଥିବା ତେଲକୁ ଗବେଷଣା କରି ମୁଁ ଜାଣିପାରିଛି ଯେ, ଏହି ତେଲ ଏକ ଲିଟରର ମୂଲ୍ୟ ମୋ ଗୁରୁ ରାମାପିଲାଇଙ୍କ ତେଲଠାରୁ ଏକପଇସା କମ୍, ଅର୍ଥାତ୍ ଅନେଶତ ପଇସା ପଡ଼ିବ ଓ ଏହା ଏକ ଲିଟରରେ ଦୁଇଶ କିଲୋମିଟର ପର୍ଯ୍ୟନ୍ତ ଯାଇପାରିବ । ଏଣିକି ତେଲ ରହିବ କେଉଁଠି ? ଇରାନ୍, ଇରାକ୍ କୁୟେତରେ ସବୁଆଡ଼େ ପାଇପ୍ । ମାତ୍ର ଭାରତରେ ଏ ପାଇପ୍ ଟଣା ସମ୍ଭବ ନୁହେଁ, କାରଣ ଭାରତବର୍ଷରେ, ଲଦି ହୋଇଥିବା ଧାନଜମି, ଖଣି ଓ ଜଂଗଲରେ ପାଇପ୍ ଯିବା ନିରାପଦ ନୁହେଁ । ଏଣୁ ମୁଁ ଅନୁସନ୍ଧାନ କରି ଜଣେ ମାନ୍ୟଗଣ୍ୟଙ୍କ ପେଟରୁ ନିର୍ଗତ ବାନ୍ତିରୁ ଖାଦ୍ୟ-ଅଖାଦ୍ୟ ସହ, ସିମେଣ୍ଟ ଗୁଣ୍ଡ, ରଡ଼ଗୁଣ୍ଡ, ଏପରିକି କୋଟି କୋଟି ଟଙ୍କାର ବ୍ୟାଙ୍କ ଆକାଉଣ୍ଟ ଚିଠା ପାଇଛି । ଏଣୁ ଯଦି ଭାରତର ଏପରି ଦୁଇତିନି ଜଣ ଉଦାର ସଂପନ୍ନ ମାନ୍ୟଗଣ୍ୟଙ୍କ ପେଟକୁ ଏକାଠି କରାଯାଏ, ତେବେ ସେଥିରେ ଅନ୍ୟୁନ ଭାରତବର୍ଷର ଦୁଇମାସ ପାଇଁ ତେଲ ମହଜୁଦ ରଖାଯାଇ ପାରିବ, ଯାହା ଅଗ୍ନିରୋଧକ ଓ ଶବ୍ଦ ନିରୋଧକ ମଧ୍ୟ । ପ୍ରିୟ ସାମ୍ବାଦିକ ବଂଧୁ, ଆଜିର ମୋର ଏ ସଫଳତା ପାଇଁ ମୋ ଠାରୁ ମୋ ଧର୍ମପତ୍ନୀ ଅଧିକ ଦାୟୀ । ଏ ଗବେଷଣାର ସଫଳତା ପାଇଁ ତାଙ୍କର ପ୍ରେରଣା, ସଦିଚ୍ଛା ଓ ଆହ୍ୱାନ ଆଜି ମତେ ବୈଜ୍ଞାନିକର ମର୍ଯ୍ୟାଦା ଦେଇପାରିଛି ।"

ପରଦିନ ବିଭିନ୍ନ ସମ୍ବାଦପତ୍ରରେ ମହାଜ୍ଞାନୀ ଜ୍ଞାନେଶ୍ୱରଙ୍କ ଫଟୋସହ, ତାଙ୍କ ଗବେଷଣିଆ ସଫଳତାର କାହାଣୀ ପ୍ରକାଶ ପାଇଥିଲା । କେବଳ ସମ୍ବାଦପତ୍ର ନୁହେଁ,

ଆକାଶବାଣୀଠାରୁ ଦୂରଦର୍ଶନ, ମନାକ୍ଷୀ ଷଣ୍ଢର ଆଶୀର୍ବାଦରୁ ଜନ୍ମିତ ଜ୍ଞାନେଶ୍ୱରଙ୍କ ମହିମା ପ୍ରଚାର କରିଥିଲା ।

ସେଦିନରୁ ଆଜିଯାଏଁ ବାବୁଙ୍କ ପତ୍ତା ମିଳିନି । ସଟଲଗାଡ଼ିର କ୍ୟାପିଟାଲିଆ ବଂଧୁମାନେ ଏଯାଏଁ ଖୋଜୁଛନ୍ତି ତାଙ୍କ ସାଙ୍ଗ, ଓରଫ୍ ଗବେଷଣିଆ ବାବୁଙ୍କୁ । ଏବେ ନିଇତି ଦୈନିକ ସମ୍ବାଦପତ୍ରମାନଙ୍କରେ ତାଙ୍କୁ ବଧେଇ ଜଣାଇ ମହାମନ୍ତ୍ରୀ, ମହାରାଜାମାନଙ୍କ ଶୁଭେଚ୍ଛା ପ୍ରକାଶ ପାଇଚାଲିଛି । କେହି କେହି କହୁଛନ୍ତି କାଳେ କେଉଁ ଧନୀରାଷ୍ଟ୍ର ବାବୁଙ୍କୁ ଅପହରଣ କରିନେବ ବା ଜୀବନରେ ମାରିଦେବ, ଏ ନେଇ ସରକାର ବାହାଦୂର, ତାଙ୍କୁ ରିଜର୍ଭ ବ୍ୟାଙ୍କର ଏକ ଶୀତତାପନିୟନ୍ତ୍ରିତ ଲକରରେ, ଜେଡ୍ଡ୍ ବଳୟ ଭିତରେ, ସମ୍ମାନର ସହ ରଖିଛନ୍ତି । ଏଣେ ବାବୁଙ୍କ ଧର୍ମପତ୍ନୀ ଏଯାବତ୍ ମର୍ମାହତ ହୋଇ ନାହାଁନ୍ତି । ତାଙ୍କ ବିଶ୍ୱାସ ଦିନେ ବାବୁ ଅନ୍ଧାର ଗହ୍ୱର ଠେଲି, ଏ ପୃଥିବୀକୁ ନୂତନ ଆଲୋକ ଦେବେ । ତାଙ୍କ ଗବେଷଣାର "ତେଲ", ଦିନେ ଭାରତକୁ ଆମେରିକା ଜାପାନଠାରୁ ଅଧିକ ଧନୀରାଷ୍ଟ୍ରର ମର୍ଯ୍ୟାଦା ଦେବ ଏବଂ ଭାରତ କାହିଁକି, ଦିନେ ସାରା ବିଶ୍ୱ ତାଙ୍କ ଆବିଷ୍କୃତ ଏହି "ତେଲ" ଦ୍ୱାରା ତେଲିଆ ଦିଶିବ ବା ଏହି ତୈଳ ଦ୍ୱାରା ତୈଳାକ୍ତ ହୋଇଯିବ ।





ଛାତଟାକୁ ଟେକିଧରିଥିବା ଚତୁର୍ଥ ଖମ୍ଭଟା ବିନା ଭୂମିକମ୍ପରେ ଅଣେଇ ହୋଇପଡ଼ିବା ଦେଖି, ଛାତତଳର ମଣିଷଗୁଡ଼ାକ ଜୀବନ ବିକଳରେ ଦୌଡ଼ା ଦୌଡ଼ି ଆରମ୍ଭ କରିଦେଲେ । ଚାହୁଁ ଚାହୁଁ ଆଖି ପିଛୁଳାକେ ଉଦ୍ଧାରକାରୀ ଦଳ ଜାଗା ଉପରେ ପହଞ୍ଚିଗଲେ । ବିନା ରକ୍ତପାତରେ କ୍ଷତାକ୍ତ ମଣିଷମାନଙ୍କ ମାନସିକ ଅସ୍ଥିରତା ଅନୁଧ୍ୟାନ କରିବାକୁ, ବଡ଼ ବଡ଼ ସମାଜସେବୀ, ସ୍ୱେଚ୍ଛାସେବୀ ଦଳ ପହଞ୍ଚିଗଲେ । ଚତୁର୍ଥ ଖମ୍ଭର ଏଭଳି ଦୟନୀୟ ଅବସ୍ଥା ଦେଖି, ଖମ୍ଭମାଲମାନେ ମ୍ରିୟମାଣ ହୋଇ ପଡ଼ିଲେ । କିଏ ଏହାର ବିଚାର ବିଭାଗୀୟ ତଦନ୍ତ ଦାବି କଲାତ, କିଏ ଏହାର କମିଶନ ସ୍ତରୀୟ ତଦନ୍ତ ଦାବି କଲା । ଏ ନେଇ ପରଦିନ ପ୍ରତ୍ୟେକ ସମ୍ବାଦପତ୍ର, ତାଙ୍କର ସଂପାଦକୀୟ ସ୍ଥାନକୁ ଶୂନ୍ୟସ୍ତମ୍ଭ କରିଦେଲେ । ବିଶିଷ୍ଟ ମନସ୍ତତ୍ତ୍ୱବିତ୍‌ମାନେ ମତଦେଲେ, ବର୍ତ୍ତମାନ ପରିପ୍ରେକ୍ଷୀରେ ଚତୁର୍ଥଖମ୍ଭର ଏ ଅଚାନକ କଂପନ ପଛରେ ବିଦେଶୀ ହାତ ଥିବା କଥା, ଅସମ୍ଭବ ନୁହେଁ । ଶିକ୍ଷାବିତ୍‌ମାନେ ମତ ଦେଲେ, ଏ ଛାତ ଅଣେଇ ପଡ଼ିବାଟା, ଦେଶ ଅଣେଇ ପଡ଼ିବା ସଂଗେ ସମାନ । ଦେଶର ତିନୋଟି ଖମ୍ଭ, ବିଚାର ବିଭାଗ, ସଂସଦ ବିଭାଗ ଓ ପ୍ରଶାସନ ବିଭାଗ, ସୁଦୃଢ଼ ଥିବା ବେଳେ ଚତୁର୍ଥଖମ୍ଭଟି ଦୁର୍ବଳ ହୋଇଯିବାରୁ, ଦେଶଟା ନଇଁଯାଇଛି । ଏ ନେଇ ମିଳିତ

ଆଲୋଚନା ଚକ୍ରରେ ଯୋଗଦେଇ ଚତୁର୍ଥ ଖମ୍ଭର ଦମ୍ଭିଲା ଇଟା-ପଥର ମାନେ କହିଲେ, ରାତାରାତି ଛୋଟରୁ ବଡ଼ହୋଇ, ଆମ୍ଭମାନଙ୍କ ମୁଣ୍ଡରେ ଗୋଡ଼ଦେଇ ଖମ୍ଭ ଉପରକୁ ଉଠିଯାଇଥିବା ଇଟାଟି, ଛାତ ସଂଗେ ବେଇମାନୀ କରିବା ଦ୍ୱାରା ଛାତ, ନିଜେ ସ୍ୱତଃପ୍ରବୃତ ଇଟା ସହ ସଂପର୍କ ଛିନ୍ନ କରିଛି ।

ଚତୁର୍ଥଖମ୍ଭର ସମ୍ମାନ ଉପରେ ଆଞ୍ଚ ଆସିବା କଥା, ସେଦିନ ସହରର ମୁଖ୍ୟ ଆଲୋଚ୍ୟ ବିଷୟ ଥିଲା । ଦେଶ ତଥା ସମାଜକୁ ଟେକି ଧରିଥିବା ଚତୁର୍ଥଖମ୍ଭର ସମ୍ମାନୀୟ ବାବୁମାନଙ୍କ ମଧ୍ୟରୁ  ଜଣେ ଦି'ଜଣ, ଏଭଳି କୁ-କାର୍ଯ୍ୟ କରି, ଖମ୍ଭର ସମ୍ମାନ ନଷ୍ଟ କରୁଥିବାରୁ, ଅନ୍ୟବାବୁମାନେ ଏ ନେଇ ଚିନ୍ତିତ ଥିଲେ । କଲେଜଛକ ଖଟିରେ ଏ ସଂପର୍କରେ ଆଲୋଚନା କରି ମହାପାତ୍ରେ କହିଲେ- ମହାଭାରତ କହେ- ''ଯଦ୍ ଯଦା ଚରନ୍ତି ଶ୍ରେଷ୍ଠ, ସ୍ତତ ଦେବେତରେଜନାଃ'', ଅର୍ଥାତ୍ ବଡ଼ ବା ଗୁରୁ ଯେଉଁ ଯେଉଁ ମହତ୍ କାମ କରିବେ ବା ବାଟ ଦେଖାଇବେ, ସାନ ବା ଶିଷ୍ୟମାନେ, ତାହାକୁ ଅନୁଧାବନ କରିବେ । ଏଣୁ ତା' ଗୁରୁଙ୍କ ମଧ୍ୟରୁ ଜଣେ ତ ଅପକର୍ମ କରି କରି, ଶେଷକୁ ଏଡ଼ସ୍‌ରେ ମଲା । ଜଣେତ ଦୋଗଲବାଜି ଧନ୍ଦା କରି ଜେଲ୍ ଗଲା । ଆଉ, ଯେ କଲା ବୋଲି ଦୁଃଖ କାହିଁକି ? ଗୁରୁଙ୍କୁ ତ ସେ ଅନୁସରଣ କରୁଛି । ମହାପାତ୍ରଙ୍କ କଥାରେ ନଥା ପକାଇ ଲେଙ୍କେ କହିଲେ- ଆମରଣ ଅନଶନ କରିଥିବା ଅସ୍ଥାୟୀ କର୍ମଚାରୀ, ଯୌତୁକ ହତ୍ୟାରେ ମୃତ କନ୍ୟାର ଅସହାୟପିତା, ଚିଲିକା ଚିଙ୍ଗୁଡ଼ି ଗଣ୍ଡଗୋଳରେ ମୃତଭାଇର ପତ୍ନୀ, ଘରପୋଡ଼ିରେ ଅର୍ଦ୍ଧଦଗ୍ଧ ମଣିଷ, ଏପରିକି କୁଷ୍ଠ-କ୍ୟାନସର୍ ରୋଗର ପ୍ରବଞ୍ଚକ ବିଜ୍ଞାପନୀ ଡାକ୍ତରଠାରୁ ଟଙ୍କା ନେଇ, ସେ ଆଜି ଆମ ଲାଇନ୍‌ର ଇଜତ୍ ସାରି ଦେଇଛି । ଲେଙ୍କେଙ୍କ କଥାକୁ ସମର୍ଥନ କରି ଶିବରଥେ କହିଲେ- ବୁଝିଲ, ସେ ଦରିଦ୍ରାଟା ଯୋଗୁଁ, ଆମେ ସଭିଏଁ ବଦନାମ୍ ହେଲେଣି । କେତେବେଳେ 'ଦିଅର-ମୃତ୍ୟୁରେ ଭାଉଜର ହାତ' ଶୀର୍ଷକ ସମ୍ବାଦ ଲେଖି ବାବୁ ଭାଉଜଠୁ ଅଭାଷା ଶୁଣିଲେଣିତ, କେତେବେଳେ ଭାଉଜଙ୍କୁ ସଭାନେତ୍ରୀ କରି ବାବୁ ଫାଇଦା ନେଲେଣି । କେତେବେଳେ ନାନୀ, ଅପା, ଦିଦିଙ୍କଠାରୁ ମାସିକିଆ ବଟି-ପେଟ୍ରୋଲ ଖର୍ଚ୍ଚ ନେଲେଣିତ, କେତେବେଳେ ସାକ୍ଷାତକାର ନାମରେ କାହାଠୁ ଦୁଇଶ ବୁଲେଇଲେଣି । ହଇଓ ବଂଶବୁନିୟାଦି, ଶିକ୍ଷାଗତ ଯୋଗ୍ୟତା ନଥାଇ, ଏ ଲାଇନ୍‌କୁ ଆସିଲେ କ'ଣ ହୁଏ ? ସେଦିନ ରାତିରେ ଖଟି ସାରିବା ପରେ ଅଇଁଠୁ କହିଲା- ହଇହୋ, ଯେ ସବୁ କି ଭଇଲୋକ ? ସେ ଟୋକା ଦଲାଲୀ କରୁ କି ଯାହା କରୁ, ସକାଳ ଛଅରୁ ରାତି ଦଶଯାଏଁ ଖଟୁଛି, ଦି ପଇସା କମଉଛି । ଛୋଟ କାଗଜ । ଏଣୁ ସେଥିରେ ଷଣ୍ଢ ଇମେଇ, ଅପାଙ୍କ ପ୍ରେସ୍ ପରିଦର୍ଶନ, ଦିଦିଙ୍କ ବହି ଉନ୍ମୋଚନ ଆଦି ସମ୍ବାଦ ଆଗ ପୃଷ୍ଠାରେ ପ୍ରକାଶ ପାଇବନିତ କାଗଜ ଚାଲିବ କେମିତି ?

ଦି'ଦିନ ଯାଇଛି ନା ନାହିଁ, ଦି'ଟା ଟୋକାଙ୍କୁ ଧରି, ଅଇଁଠୁ ଦୋକାନରେ ପହଞ୍ଚିଗଲେ

ତଥାକଥିତ ଚତୁର୍ଥସ୍ତମ୍ଭର ଡେଙ୍ଗା ଇଟା- ଜିତୁବାବୁ । ସ୍କୁଟରରୁ ଓହ୍ଲାଉ ଓହ୍ଲାଉ କହିଲେ- ଏଠି କଣ ଚାଲିଛି କିରେ ? ଦେଖ୍ ବାଇନ, ମୁଁ କାହାର ନୁହେଁ । ରାତି ପାହିଲାବେଳକୁ ଏଠି କିଛି ନଥିବ । ଲୁନାରୁ ଓହ୍ଲାଉ ଓହ୍ଲାଉ ଅନ୍ତଲ ପେଟୁଆ ଟୋକାଟା କହିଲା- ଦେଖ ଥଇଁଠୁ, ଆମେ ଅଇବଡ୍ ମାଲ୍ ପିଇବୁ, ସମ୍ବାଦ ଛାପିବାକୁ ଟଙ୍କା ନେବୁ । ତେବେ ତୋ ଦୋକାନରେ ଯଦି ଆଉଥରେ ଆମକଥା ଆଲୋଚନା ହୁଏ ନା, ତେବେ ସବୁ ସାଫ୍ କରିଦେବୁ । ଦେଖୁ ଦେଖୁ ଏ ପାଟି ତୁଣ୍ଡରେ ଗହଳି ଜମିଗଲା । ଦୋକାନୀ ପକ୍ଷରୁ ଦପେ କଲେଜ ଟୋକା ତଡ଼ାଧରି ବାହାରିଲେ । ଜଣେ କହିଲା- ହଇଓ ବାବୁ ତୁମର ହୋଇଡ଼ିଂ ନମ୍ବର ଅଛି ? ତୁମେ ପରା ବର୍ମାରୁ ଧରାହୋଇ ଆସିଛ । ଆଉ ଜଣେ କହିଲା- ହଇଓ, ତୁମର ପରା ଭାଉଜ ଧର୍ଷଣ ମାମଲା, ଅର୍ବାନବ୍ୟାଙ୍କ ବଡ଼ଶଳା ଆକାଉଣ୍ଟରୁ ଜାଲ୍ ଉଠାଣ ମାମଲା ଏଯାଏଁ ସରିନି । ଆଉ କିଏ କହିଲା- ହଇଓ, ତୁମ ଘରେ ପରା ମଲାମଣିଷ ପାଇଁ ୧୪୪ ଧାରା ଲାଗୁ ହୁଏ । ସାନ ଭାଇ ପରା ଝିଅକୁ ବୋଲି କରି ଥାନାକୁ ଯାଏ । ଶେଷକୁ ଜଣେ କହିଲା- ବୁଝିଲ, ଯେ ଏକ କଳିକତୁରା ପୋକ । ଯା'କୁ ମାଇଲେ ହାତ ଗନ୍ଧେଇବ । କଥାରେ ନାହିଁ- ''ଅଲାଜୁକ ମୁହଁରେ ଖଡ଼ାଗଛ, ନା ମତେ ଛାଇ ହେଉଛି ।'' ଏ ପାଟିତୁଣ୍ଡ ଭିତରେ, କଚେରୀ ଆଡ଼କୁ ଦଦରା ମୋପେଡ୍ ଧରି ଯାଉଥିବା ବୁଲୁ ଶର୍ମା, ଘଟଣା ସ୍ଥଳରେ ଅଟକି ଗଲେ । ବାରମ୍ବାର ନିର୍ବାଚନ ହାରୁଥିଲେ ବି, ସେ ନାଟକ-ସଂଗୀତର ଲୋକ, ପକ୍କା ମଧ୍ୟସ୍ଥି । ଘଟଣାର ଅସ୍ଥାୟୀ ସମାଧାନ କରି, ଘରକୁ ଫେରିଲେ ଶର୍ମା ।

ପରଦିନ ସକାଳୁ ସକାଳୁ ଶର୍ମାଙ୍କ ପାଖରେ ପହଞ୍ଚିଗଲେ ଜିତୁବାବୁ । ଦାଣ୍ଡପିଣ୍ଡାରେ ବସୁ ବସୁ କହିଲେ- ବୁଝିଲ ଭାଇନା, ତୁମେ ନଥିଲେ, କାଲି ମୋ ଇଜ୍ଜତ୍ ଛଅଣା ଦି ପଇସାରେ ଯାଇଥାନ୍ତା । ରାତିଟା ସାରା ମୋ ଆଖିକୁ ନିଦ ନାହିଁ । ଜ୍ୱାଳାମୁଖୀ ଯୋଗୁଁ ସଂସାର ଅଶାନ୍ତି । ଆଉ ଏ ଅଶାନ୍ତି କେତେ ସମ୍ଭାଳିବି କହିଲ ? ଯିଏ, ପ୍ରଥମେ ମୋତେ ଏ ଧନ୍ଦାରେ ପଶେଇଥିଲା, ତାକୁ ମାସିକିଆ ବଟି ଦେଉଥିଲି । ଏବେ ଯିଏ, ମୋତେ ଏ ଧନ୍ଦାରେ ପୁରେଇଛି, ତାକୁ ଦଶହଜାର ଦେଲି । ସେଥିରେ ତା'ର ପୁଣି ଡିମାଣ୍ଡ ମୋ ଘରକୁ କାର୍ତ୍ତିକ ମାସ ସାରା ଅଭଡ଼ା ଯିବ । ଏଣେ ଟେବୁଲବାଲାଙ୍କ ଡିମାଣ୍ଡ, ମାସିକିଆ ଖଜା, ବର୍ଷିକିଆ ଡାଇରୀ, ଏପରିକି ନାନୀ ବାହାଘର, ନନା ଶୁଦ୍ଧଘର ଯାଏଁ ଅଭଡ଼ା । ତାଛଡ଼ା, ପେଶାଗତ ଶତ୍ରୁଙ୍କୁ ରୋକିବାକୁ ଦୁଇତିନିଜଣଙ୍କୁ ସାଥିରେ ଧରି ବୁଲିଲେ, ସେଥିକି ତ ପୁଣି ଖର୍ଚ୍ଚ ଅଛି । ଏଣେ ବୁଦ୍ଧି ଅଭାବରେ, ଗୋଟାକୁ ଲେଖା-ଲେଖି ପାଇଁ ରଖିଛି ଯେ, ତା'ର ସପ୍ତାହକୁ ଦୁଇପେଗ୍ ମାଲ୍ ସହ ବସ୍ କନ୍‌ସେସନ୍ ଟିକେଟ୍ ଦରକାର । ସବୁ ଶୁଣି ଶର୍ମା କହିଲେ- ଆରେ ତୋ କଥା ସବୁଠିକ୍ ଯେ, ହେଲେ ଆଗ ସମ୍ମାନଟାକୁ ଜଗ । ଆତ୍ମାର ଧୁଲେଇକରଣ କର । ସମ୍ମାନ ଗଲେ ଆଉ ଆସିବନିଟି । ଶର୍ମାଙ୍କ କଥାରେ ହସିଲେ ଜିତୁବାବୁ । ହସୁ ହସୁ କହିଲେ- ଭାଇନା ଥାଉ ଥାଉ, ମୋତେ କଣ ସମ୍ମାନ

ଅଭାବ ହେବ ? ଏତେ ତ ଖର୍ଚ୍ଚ ହେଉଛି, ସମ୍ମାନ ପାଇବାରେ ଆଉ ଦି'ପଇସା ଖର୍ଚ୍ଚ ହେବ, ହେଉ । ଧର୍ମପଦ, ମକରଧ୍ୱଜ ପ୍ରଭୃତିଙ୍କଠାରୁ ବୁଲେଇ ଦେବିନି ।

ଟୋକାଟାର ଏ ଦୟନୀୟ 'ସମ୍ମାନଖୋଜା' ଅବସ୍ଥା ଦେଖି ପରଦିନ ସ୍ମୃତିଚାରଣ କମିଟିର ଜରୁରୀ ସଭା ଡାକିଲେ ଶର୍ମାବାବୁ । ଉଦ୍‌ବୋଧନ ଭାଷଣରେ କହିଲେ- ମଲାପରେ ସ୍ମୃତିଚାରଣ କରି ମରଣୋତ୍ତର ସମ୍ମାନ ଦେବା ଅପେକ୍ଷା, ବଞ୍ଚିଥାଉଁ ଥାଉଁ, ସମ୍ମାନ ଖୋଜା ଲୋକଙ୍କ ପାଇଁ ସମ୍ମାନ ସୃଷ୍ଟି କରିବା, ଆଜି ଆମର ପ୍ରଧାନ କର୍ତ୍ତବ୍ୟ । ଅନୀତି-ଦୁର୍ନୀତି ଯୁକ୍ତ ମଣିଷଙ୍କୁ ଏଣିକି ଦୋଷମୁକ୍ତ କରି, ତାଙ୍କର ଅମର-ଆତ୍ମାକୁ ସମ୍ମାନ ଦେବା ଆମର ପରମ ଲକ୍ଷ୍ୟ । ଏଣୁ ଆଜି ଆମ ସହରର.ଚତୁର୍ଥ ଖମ୍ବର ସମ୍ମାନରକ୍ଷା ପାଇଁ, ଆମକୁ ଜିତୁବାବୁଙ୍କ ପାଇଁ କିଛି କରିବାକୁ ହେବ । କମିଟି ସଭାପତିଙ୍କ ଏ ଭାଷଣ ଶୁଣି ଜନୈକ କମିଟି ସଭ୍ୟ କହିଲେ- ସେ ଲୋକର ସ୍ମୃତିଚାରଣ କଲେ, ଲୋକେ ଆମକୁ ଗୋବର ପୋପାଡ଼ିବେ ।ଶହଶହ ଅବିବାହିତା ଝିଅ, ବିବାହିତା ନାରୀ, ଗରିବ ମଣିଷ ଆମ ଉପରେ ନିଃଶ୍ୱାସ ପକାଇବେ । ତେବେ ସଭାପତିଙ୍କ ହ୍ୱିପ୍ ବଳରେ ଜିତୁବାବୁଙ୍କ ସମ୍ମାନ ପାଇଁ ସ୍ୱତନ୍ତ୍ର ପ୍ରସ୍ତାବ ପାସ୍ କରାଗଲା । ପ୍ରଥମ ପ୍ରସ୍ତାବ ଅନୁଯାୟୀ ନିଷ୍ପତ୍ତି ହେଲା ଯେ, ବାବୁ, ଆସନ୍ତା ପନ୍ଦରଦିନ ମଧ୍ୟରେ କମିଟିକୁ ନିଜର ଫଟୋ ସହ, ଜନ୍ମତାରିଖ, କିଛି ଅଚିହ୍ନା ଲୋକଙ୍କ ନାମ ସହ ସାତ ହଜାର ଟଂକା ଦେବେ । ଯଦ୍ୱାରା ବାବୁଙ୍କ ମୃତ୍ୟୁ ପରେ, କମିଟି ଛୋଟ- ବଡ଼ ସମସ୍ତ ସମ୍ବାଦପତ୍ରରେ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି, ବିଜ୍ଞାପନ ମାଧ୍ୟମରେ ବାବୁଙ୍କ ଆବିର୍ଭାବ- ତିରୋଧାନ ଓ 'ଆପଣ, ଆମକୁ ଶୋକସାଗରେ ଭସାଇ ଚାଲିଗଲେ'ର ଦୁଃଖଦବାର୍ତ୍ତା ଛାପିପାରିବ । ଦ୍ୱିତୀୟ ନିଷ୍ପତ୍ତି ଅନୁଯାୟୀ, ବାବୁଙ୍କ ଅକାଳ ମରଣରେ କମିଟି ପକ୍ଷରୁ ଏକ ସ୍ମୃତିଚାରଣ ଉତ୍ସବ, ସ୍ଥାନୀୟ ଅନ୍ନପୂର୍ଣ୍ଣା ରଂଗମଞ୍ଚରେ କରାଯିବ । ଯେଉଁଥିରେ ବାବୁଙ୍କ ରଚିତ ଏକ ଉଦ୍‌ଘାଟନୀ ସଂଗୀତ, ଏକ ନାଟକ ଓ କମିଟି ପକ୍ଷରୁ ଏକ ସ୍ମରଣିକା ପ୍ରକାଶ ପାଇବ । ତେବେ ଏଥି ପାଇଁ ବାବୁ, କୌଣସି ଏକ ବଡ଼ କବିଙ୍କଠାରୁ ନିଜର ଗୁଣଗାନର ଏକ ଉଦ୍‌ଘାଟନୀ ସଂଗୀତ ସହ ଉତ୍ସବ ପାଇଁ ତେଇଶ ହଜାର ଟଙ୍କା କମିଟି ନାମରେ ଆଗୁଆ ଦାଖଲ କରିବେ । ତୃତୀୟ ନିଷ୍ପତ୍ତି ଅନୁଯାୟୀ, ସହରର ଗରିବ, ଖଟିଖିଆ ମଣିଷଙ୍କର ବାବୁଙ୍କ ପ୍ରତି ଥିବା ଘୃଣାଭାବ ଦୂର କରିବା ପାଇଁ, ସିଂହଦ୍ୱାରର ଏମାରମଠ ଚକଡ଼ା ଉପରେ ବାବୁଙ୍କ ସ୍ମୃତିରେ ମାହାଳିଆ ଭୋଜନର ବ୍ୟବସ୍ଥା କରାଯିବ । ଏ ନେଇ ବାବୁ, କମିଟି ନାମରେ କୋଡ଼ିଏ ହଜାର ଟଙ୍କା ଆଗୁଆ ଦାଖଲ କରିବେ ।

ପରଦିନ, କମିଟିର ନିଷ୍ପତ୍ତିକୁ, ଜିତୁବାବୁଙ୍କୁ ପଢ଼ି ଶୁଣାଇଲେ ବୁଲୁଶର୍ମା । ଶର୍ମାଙ୍କ କଥା ଶୁଣି, ମୁଣ୍ଡରେ ହାତଦେଲେ ଜିତୁବାବୁ । ବ୍ୟସ୍ତତା ଭିତରେ କହିଲେ- ହଇଓ ଭାଇନା, ଏ ସମ୍ମାନ ପାଇଁ, ମୁଁ ପଚାଶହଜାର ଦେବି ?? ହଇଓ, ଯଦି ମୁଁ ଆଉ ତିରିଶବର୍ଷ ବଞ୍ଚିଯାଏ,

ତେବେ ସେ ଟଙ୍କା ପରା ବତିଶିଲକ୍ଷ ହେବ । ନାହିଁ ଯଦି ସୁଧ ଲଗାଏ, ତେବେ ପରା ସତୁରିଲକ୍ଷ ମିଳିବ । ଚିତୁବାବୁଙ୍କ କଥା ଶୁଣି, ଶର୍ମା କହିଲେ- ବୁଝିଲୁ ବାବା, ଏଇଥିପାଇଁ ତୋ ବେକରେ ଗାମୁଛା ପଡୁଛି । ଆରେ, ଯେତେତ ଶମଶାନ, ଗୋଚର, ଅନାବାଦି ସବୁ ମାଡ଼ି ବସିଲୁ । ଯେତେକେ- ଖଟୁଆ, ମିଛୁଆ, ଲାଞ୍ଚୁଆଙ୍କୁ ସାଂଗ କଲୁ । ଏବେ କହୁଛୁ, ଏତେ ଟଙ୍କା ଖର୍ଚ୍ଚ କରିହେବନି ? ନକର । ମଲାପରେ ତୋ ଲକ୍ଷ ଲକ୍ଷକୁ ଖଣ୍ଡଖାଆନ୍ତୁ, ତୋ ଶବକୁ ଶାଗୁଣା, ବିଲୁଆ ଝୁଣନ୍ତୁ । ଆରେ ଓଲା, ଆଗ ଇଜ୍ଜତ୍ ଜଗ । ଆରେ ବଞ୍ଚିଥାଉ ଥାଉ ତ ଏତେ ଶତ୍ରୁ, ମଲାପରେ ଶତ୍ରୁ ଆଉ ତୋ ଆତ୍ମାଟାକୁ କଲବଲ ନ କରନ୍ତୁ । ତେବେ କମିଟିର ନିଷ୍ପତ୍ତି ତ ଶୁଣିଲୁ । ଏବେ ଚତୁର୍ଥ ନିଷ୍ପତ୍ତି ଶୁଣ୍, ତା' ପାଇଁ ପଇସା ପଡ଼ିବନିରେ । ଆଉ ଯଦି ଏଇଟା ହୁଏନା, ତୋ ସମ୍ମାନ କୋଟିଏ ଟଙ୍କାର ହୋଇଯିବ । ବୁଝିଲୁ ବାବା, ତୁ ମରିବାର ଦଶାହ ଉପଲକ୍ଷେ, ତୋରି ପାଇଁ, ତୋ ସମ୍ବାଦପତ୍ରରେ ଏକ ମର୍ମବେଦନା ପ୍ରକାଶ ପାଇବ । ଲେଖାଥିବ-

"ହେ ବଂଧୁ ! ତୁମ୍ଭ ମୃତ୍ୟୁରେ ଆଜି ସାରା ପୃଥିବୀ ସ୍ତବ୍ଧ ହୋଇଯାଇଛି । ଆଲୁଅ ଲିଭିଯାଇଛି । ତୁମେ କେବେ ଜନ୍ମ ହେବ, ଅନ୍ଧାର ନାଶ କରି ନୂତନ ଆଲୋକ ଦେବ, ସେ ଚିନ୍ତାରେ ଆମେ ତୁମର ନୂତନ ଜନ୍ମକୁ ଅପେକ୍ଷା କରିଛୁ । ହେ ବଂଧୁ !! ତୁମେ ଥିଲ ଏ ଦେଶର ଅମୃତର ପୁତ୍ର, ତୁମେ ପିଲାଦିନେ ଛେଳିମାଂସ ବିକୁଥିଲ ।। ସମସ୍ତ ଚୋର, ଖଣ୍ଡ ଡକାୟତଙ୍କୁ ଭଲ ପାଇପାରି, ନିଜର ମହନୀୟତାର ପରିଚୟ ଦେଇଥିଲ । ହେ ବଂଧୁ ! ତୁମେ ଥିଲ ଭାରତର ମଣି । ଉତ୍କଳମଣି ଯେପରି ନିଜ ପୁତ୍ରକୁ ତ୍ୟାଗ କରି ବନ୍ୟାଞ୍ଚଳରେ କାନ୍ଦି ବୁଲୁଥିଲେ, ତୁମେ ସେପରି ନିଜର ପିତା, ପତ୍ନୀ, ପୁତ୍ର, କନ୍ୟା, ଭ୍ରାତା, ସମସ୍ତଙ୍କୁ ତ୍ୟାଗ କରି, ଦିନ-ରାତି ସମାଜସେବା ପାଇଁ ଖାଇ ବୁଲୁଥିଲ । ହେ ବଂଧୁ ! ତୁମେ ଥିଲ ଏକାଧାରରେ ଦୁର୍ଯ୍ୟୋଧନ, ଶ୍ରୀକୃଷ୍ଣ ଓ ଚାଣକ୍ୟ । ଲକ୍ଷ୍ମୀଙ୍କୁ ସୁଧ ଲଗାଇବା, ପରର ଗୋଛି କାଟିବା, ନିଜ ଘର ପାଇଁ ପରଘର ଭାଂଗିବାରେ ତୁମର ମହତ୍ କୌଶଳ, ପର-ନାରୀ ପ୍ରତି ତୁମର ପ୍ରେମ, ଆଜି ଆମ୍ଭଙ୍କୁ ଦିଗ୍‌ଦର୍ଶନ ଦେଉଛି । ହେ ବଂଧୁ ! ତୁମେ ଥିଲ, ଜଣେ ସର୍ବଗିଳା-ନୀଳକଣ୍ଠ । ସଂସାରର ପ୍ରତିଟି ଦୂଷିତ ଦ୍ରବ୍ୟ ଯଥା- ଚରିତ୍ରହୀନା ନାରୀ, କଳାଟଂକା ପ୍ରଭୃତି ବିଷକୁ ତୁମେ ପାନ କରିଥିଲ । ତୁମର ମେଘଡମ୍ବରୁ କଥା, ଠେଙ୍ଗ୍ ଠେଙ୍ଗ୍ ଚାଲି, ଆଜି ଆମର ମନେ ପଡ଼ିଯାଉଛି । ହେ ବଂଧୁ ଆଜିର ପବିତ୍ର ଦିନରେ, ତୁମକୁ ମନେପକାଇ, ଦି'ଧାର ଲୁହ ଢାଳିବା ଛଡ଼ା, ଆମେ ଆଉ କଣ କରିପାରିବୁ ?"

ବୁଲୁଶର୍ମାଙ୍କ କୋହଭରା ମରଣୋତ୍ତର-ମାନପତ୍ର ଶୁଣି ଭୋ ଭୋ କରି କାନ୍ଦି ପକାଉଥିଲେ ବାବୁ । ତାଙ୍କ ମୃତ୍ୟୁରେ, କୋଟିଏ ଲୋକଙ୍କ କାନ୍ଦ, ତାଙ୍କୁ କୋଟିଏ ଟଙ୍କାର ସମ୍ମାନ ଦେଉଥିଲା । ତାଙ୍କୁ ଲାଗୁଥିଲା, ତାଙ୍କ ମୃ ତ୍ୟୁରେ ସତେ ଯେପରି ସମଗ୍ର ପୃଥିବୀରେ

ହାହାକାର ଘୋଟିଯାଇଛି । ତାଙ୍କ ବିୟୋଗରେ ଚତୁର୍ଥଖମ୍ଭଟା ରାଂଗି ଖଣ୍ଡଖଣ୍ଡ ହୋଇଯାଇଛି । ମହାପାତ୍ରେ, ଲେଙ୍କେ, ଶିବରଥେ ପ୍ରଭୃତି ଇଟା-ପଥରମାନେ ଖଣ୍ଡବିଖଣ୍ଡିତ ହୋଇଯାଉଛନ୍ତି । ଅବଚେତନ ମନରେ ସେ ଶୁଣୁଥିଲେ, ସ୍ମୃତିଚାରଣ କମିଟି ଦ୍ୱାରା ଆୟୋଜିତ ଉତ୍ସବର ଉଦ୍‌ଘାଟନୀ ସଂଗୀତ-

''ତୁମେ ଚାଲିଗଲ, ଆଉ ପାରିବୁହେ, ଆମକୁ କରିଇ ଅନ୍ଧ,
ସର୍ବଗିଳାର ପ୍ରତୀକ ତୁମେ ହେ, ତୁମେ ହେ ମାରଣାସ୍ତ୍ର,
ତୁମରି ବିହୁନେ, ସହରଟା ଆଜି, ଲାଗୁଛି କେମିତି ଫାଙ୍କା,
କେତେ ନାରୀଙ୍କର ମୁଣ୍ଡରୁ ଯାଇଛି ସିନ୍ଦୁର, ଆଉ ହାତରୁ ଯାଇଛି ଶଙ୍ଖା
ଆଉ ଥରେ ଜନ୍ମ ନିଅ............
ଅସତ୍ୟ, ଅନ୍ୟାୟ, ଅଧର୍ମକୁ ଜିତି
ଜିତେନ୍ଦ୍ରିୟ ହୋଇଯାଅ ।''






ଅସୁସ୍ଥ ବାପା ଓ ରୋଗଣା ସନ୍ତାନଙ୍କ ଚିନ୍ତାରେ ଚିନ୍ତିତ ଥିବାବେଳେ ବୋଉ କହିଲା- ବାପାଙ୍କର ଖୁବ୍ ଇଚ୍ଛା ଥିଲା, କାଳିଆକୁ ଦେଖିବେ । ପିଲାଙ୍କ ପାଇଁ ସବୁ ଯଚାତ-ପୁରୀରେ । ଯେ ଯାଚଞ୍ଚା କାମ ନ ସରିଲା ଯାଏଁ, ପିଲାଙ୍କୁ ରୋଗ ଛାଡ଼ିବ କେମିତି ? ବାପା କହିଲେ- ତୋ ସାଂଗେ ଯୋଉ, ପୁରୀଟୋକାଟା କାମ କରୁଥିଲା, ତାକୁ ଖବର ଦେଉନୁ । ସ୍ତ୍ରୀ କହିଲା, ତୁମ ସାଂଗ ଗର୍ଭଣିଆ ପଣ୍ଡାଙ୍କୁ ଚିଠିଟେ ଦେଉନ । କେତେଦିନ ଏମିତି ହନ୍ତସନ୍ତ ହେବା । ମେଘମହ୍ଲାର ବାବୁ କହିଲେ- ଗର୍ଭଣିଆ କ'ଣ ମୋତେ କମ୍ ଭଲ ପାଏ ! ମେସ୍‌ରେ ଥିବାବେଳେ ଯାଗା ଡ଼ାଲେମା, ଅଦା-ହେଙ୍ଗୁ ଖେଚେଡ଼ି, ବାମଉଡ଼ା ଶାଗ, ଜହମାର୍କା ଖଟା କଣ କମ୍ ଚଖେଇଛି ! ଆଲୋଚନା ସରିବାର ଦି'ଦିନ ନଯାଉଣୁ, ପହଞ୍ଚିଗଲା ପୁରୀରୁ ଚିଠି । ଅଫିସିରୁ ଫେରି ଘରକୁ ପଶିଯାଉ ଯାଉ ଡ଼ାକ ଛାଡ଼ିଲେ ମେଘୁବାବୁ- ଜାଣିଲୁ ବୋଉ, ଆମ ଆଲୋଚନା କାଳିଆକୁ ଶୁଭିଗଲା । ଦେଖୁନୁ, ଗର୍ଭଣିଆ ଚିଠି ଦେଇଛି, ପୁରୀ ଯିବାକୁ । ଦଉଡ଼ିଆ ଖଟରୁ କଡ଼ ଲେଉଟାଇ ବାପା କହିଲେ- ଆଉ ଡ଼େରି କରନି ମେଘ, କାଳିଆର ଡୋରି ଲାଗିଛି, ଏଇବେଳେ ପିଲାଛୁଆଙ୍କୁ ଧରି ଚାଲିଯା ।

ତାକୁ କହିଦେବୁ, ଆଉ ତ ଚାଲିପାରୁନି, ଆଖିକୁ ଦିଶୁନି, ମରିଗଲେ ସ୍ୱର୍ଗଦ୍ୱାରଟିକେ ନେଇଯିବ । ବାଡ଼ିଘରୁ ବୋଉ କହିଲା- ଝିଆଙ୍କ ପାଇଁ ପଇସା ଜମେଇଛି । ଗଲେ ସବୁ ଯାଚଞ୍ଚା ଏକାଠି ସାରିଦେବୁ । ଗର୍ଭଣିଆ ଚିଠି ଲେଖିଥିଲା- "ଏ ଦିହରକୁ ଚିହ୍ନିବାରେ ଡେରି ହୁଏନି । ଶୋଇଲା ସ୍ତ୍ରୀଲୋକଙ୍କୁ ବାଡି ଲାଗିଲେ, ଘୁମାଲୋକର କୁମ୍ଭକର୍ଣ୍ଣିଆ ନିଦ ଭାଙ୍ଗିଲେ, ଜାଣିବୁ ପୁରୀ ହେଲା । ଷ୍ଟାଣ୍ଡରେ ମୁଁ ଥିବି । ମୋତେ କେବଳ ସେଠା ଛାଡ଼ିବା ସମୟଟା ଜଣାଇଦେବୁ ।

ପରଦିନ ସ୍ତ୍ରୀ ଅସୁସ୍ଥତା ଜନିତ ଛୁଟି ଆବଶ୍ୟକ ଦର୍ଶାଇ ପିଲାଛୁଆଙ୍କୁ ଧରି, ବସ୍ ଧରିଲେ ମେଘମହ୍ଲାର ବାବୁ । ବସ୍‌ରେ ଡ଼ିସ୍କୋମାର୍କା ଜଗନ୍ନାଥ ଭଜନ ଶୁଣି ଶୁଣି ଶୋଇଗଲେ ପିଲାଏ । କେତେବେଳେ ଶୋଇଗଲେ କୋକିଳକଣ୍ଠୀ । ହଠାତ୍ ପତ୍ନୀଙ୍କ 'ଓ' କାର ନାଦ ସହ ଉତ୍କଟ ପଚା ଚିଙ୍ଗୁଡ଼ି ଗନ୍ଧରେ ଉଠି ପଡ଼ିଲେ ପିଲାଏ । ନାଲିବସ୍‌ର ଚିରାଚରିତ ଟାୟାର ଫଟା ବ୍ୟାପାରରେ ଚାରିଘଣ୍ଟା ବିଳମ୍ବ ହୋଇ ଗଲା ବାଟରେ । ଷ୍ଟାଣ୍ଡରେ ନଥିଲା ଗର୍ଭଣିଆ ପଣ୍ଡା । ହୁଏତ ବିଳମ୍ବଜନିତ କାରଣରୁ ଅପେକ୍ଷା କରି କୁଆଡ଼େ ଚାଲିଯାଇଥିଲା । ଏଭଳି ଅସହାୟ ଭିତରେ ସାହସର ଆଶା ସଞ୍ଚାର କଲେ ସର୍ବ ଶୁଣ୍ଡିଆ ଖୁଣ୍ଟିଏ । ଅନ୍ତରଂଗତାର ସହ କହିଲେ- କଣ ମାଲିକ, ଦର୍ଶନ ହେବ ? ପୁଣି ପଚାରିଲେ ଖୁଣ୍ଟିଏ- କି ଦାଦା, ହୋଟେଲ ଯାବେ ନା କି ? ଗର୍ଭଣିଆର ଚିଠି ନିର୍ଦ୍ଦେଶ ମୁତାବକ ନୀରବ ରହିଲେ ମେଘୁବାବୁ । ବାବୁଙ୍କ ସଂପୂର୍ଣ୍ଣ ନୀରବତା ଦେଖି, ପୁଣି ଖୁଣ୍ଟିଏ ପାଖକୁ ଆସି ପଚାରିଲେ ଆରେ ବାବା ପଣ୍ଡା କୌନ ? ପଣ୍ଡାଶବ୍ଦ ଶୁଣି ମୁହଁ ଖୋଲିଲେ ମେଘମହ୍ଲାର ବାବୁ-ଆମ ପଣ୍ଡା ଗର୍ଭଣିଆ ପଣ୍ଡା । ଫଟ୍ କରି ହସି ହସି, ଫେରକୁ ଟେକି, ଖୁଣ୍ଟିଏ କହିଲେ- "ଓ... ଗର୍ଭଣିଆ ତୁମ ପଣ୍ଡା ? ବ୍ୟସ୍ତ ନାହିଁ, ସେ ମୋ ବଂଧୁ, ମୋ ଲୋକ, ମୋ ବଂଶର ଦାୟାଦ । ଆଉ ଡେରି କରନି । ହେ ରିକ୍ସା ।" ଗର୍ଭଣିଆ ନିଜର ଅନୁପସ୍ଥିତିରେ, ନିଜର ବନ୍ଧୁକୁ ଦାୟିତ୍ୱ ଦେଇଥିବା ଜାଣି ଖୁସିହେଲେ କୋକିଳକଣ୍ଠୀ । ଅନାଉ ଅନାଉ ରିକ୍ସା ପହଞ୍ଚିଲା, ଏକ ବିରାଟ କୋଠା ସାମନାରେ । ପାଖରେ ସମୁଦ୍ରର ଘୁ ଘୁ ଗର୍ଜନ । ଗର୍ଭଣିଆର ଘର ଦେଖି ଚମକି ପଡ଼ିଲେ ମେଘୁ ବାବୁ । ରିକ୍ସାରୁ ମାଲ୍ ଉତାରୁ ଉତାରୁ ଖୁଣ୍ଟିଏ କହିଲେ- ମୁଖାର୍ଜୀ ଦାଦା, ୟେ ମୋ ଲୋକ । ଦିଚାରି ଦିନ ରହିବେ, ଯେମିତି କାଣିଚାଏ ଅସୁବିଧା ହେବନି । ଚାହୁଁ ଚାହୁଁ ଆଖି ପିଛୁଳାକେ ଉଭାନ୍ ହୋଇଗଲେ ଖୁଣ୍ଟିଏ । ଦାଦା କହିଲେ- ଖୁଣ୍ଟିଏ ଖୁବ୍ ମଜଲି ସାର୍ । ଭାଙ୍ଗକୁ ଗଲେ । ପୋଖରୀପାଣି ସାରି, ଘରକୁ ଘିଅ ଗୁରୁନ୍ଦା ଯୋଡ଼ି ଆସିଯିବେ ଯେ । ରିକ୍ସାକୁ ତିରିଶ ଟଙ୍କା ଦେଇଦିଅନ୍ତୁ, ସାର୍ । ବାବୁ କହିଲେ, କ'ଣ ଏତିକି ବାଟକୁ ତିରିଶ ଟଙ୍କା । ଦାଦା କହିଲେ- ତାଙ୍କ ପାଇଁ ତିରିଶ

କ'ଣ ସାର୍, ଗୋରା ବାବୁ ଆସିଲେ ପରା ଶହେ କମେଇବେ । ତା'ଛଡ଼ା ଏ ପଡ଼ିଆ ଦାଣ୍ଡରେ ତାଙ୍କର ଦି'ପଇସା ଅଧିକା ଦରକାର । ତେବେ, ଆପଣ ଉପରକୁ ଚାଲି ଯାଆନ୍ତୁ ସାର୍ । ରୁମ୍ ନମ୍ବର ୩୦୨ । ଆଟାଚ୍ ବାଥ୍ । ବାଲକୋନୀରେ ସମୁଦ୍ର । ଉପରେ ବାର । ତଳେ ହୋଟେଲ୍ । ଏହା ମଧ୍ୟରେ ଆଟାଚ୍-ବ୍ୟାଗ୍‌କୁ ଉପରକୁ ବୋହି ନେଇଯାଇଥିଲେ ବୟ ଗୁଡ଼ାକ । ରୁମ୍ ପାଇଁ ତିନିଶହ ଟଙ୍କାଦେଇ ଉପରକୁ ଯାଉଯାଉ, ମଇଳା ଗନ୍ଧରେ ନାକ ଫାଟି ପଡ଼ିଲା ସମସ୍ତଙ୍କର । ରୁମ୍‌ଟାରେ ଲାଟିନ୍ ଜାମ୍ ହୋଇ ମଇଳା ଭାସୁଥିଲା । ତଳକୁ ଫେରିଲେ ମେଘୁବାବୁ । ସବୁଶୁଣି ଦାଦା କହିଲେ- ଖାଲି ରାତିଟା ଆଡ଼ଜଷ୍ଟ କରିଦିଅନ୍ତୁ, ସାର୍ । ସକାଳୁ ବଢ଼ିଆ ରୁମ୍ ଦିଆଯିବ । ବିରକ୍ତି ସ୍ୱରରେ କହିଲେ ବାବୁ- ମୋ ଟଙ୍କା ଫେରାଅ । ହଇଓ, ଏଠି କ'ଣ ମଣିଷ ରୁହନ୍ତି ? ବାବୁଙ୍କ କଥାର ଜବାବ ଦେଇ ଦାଦା କହିଲେ-"ଯେ ପୁରୀ ଟାଉନ୍ ଆଜ୍ଞା । ଏଠି ଧୂଳିକଣାରେ ଧର୍ମଜମି ରହିଛି । ସମୁଦ୍ର ପଠାରେ, ବଡ଼ଦାଣ୍ଡ ପିଚୁରେ ପରା ମଣିଷ ଶୋଉଛନ୍ତି । ତା ଛଡ଼ା ରିକ୍ସାବାଲା କମିଶନି ନେଲାପରେ ଟଙ୍କା ଫେରସ୍ତର ପ୍ରଶ୍ନ ନାହିଁ ? ନାଇଁ ଯଦି ଆପଣ ଜିଦ୍ କରୁଛନ୍ତି, ଯାଆନ୍ତୁ, ଗୁଣ୍ଡା, ହୁଣ୍ଡା, ଭୁଷଣ୍ଡାଙ୍କ ହାବୁଡ଼ରେ ପଡ଼ନ୍ତୁ ।" ରାଗ ତମତମରେ ଉପରକୁ ଯାଉ ଯାଉ, ପହଞ୍ଚିଗଲେ ବାନା ଟୋକା ଦି'ଟା । ରସିଦ୍ ବହି କାଢ଼ୁ କାଢ଼ୁ କହିଲେ- କ'ଣ ସାର୍, ଚିଲିକା ନା ନନ୍ଦନକାନନ ? ବ୍ୟସ୍ତତା ଭିତରେ ବାବୁ କହିଲେ- ଆମେ ଯାତ୍ରୀ ନୁହଁ, ଏଠି ମୋ ବନ୍ଧୁ ଘର । ହସିଦେଲେ ଟୋକା ଦି'ଟା । ଆମେ ବେକାର । ଆମ ପାଇଁ ଚାକିରୀ ନାହିଁ, ଯଦି ଅଛି, ଲାଞ୍ଚ ଦେଇ, ମନ୍ତ୍ରୀଙ୍କୁ କହିବାର କ୍ଷମତା ନାହିଁ । ଆପଣ ଯିବେ, ଆମେ କମିଶନି ଦଶପଚାଶ ପାଇବୁ । ସକାଳ ସାତରୁ ଦୁଆରୁ ବସିବେ, ସଂଜ ସାତରେ ଦୁଆରେ ଓହ୍ଲାଇବେ । ବିରକ୍ତିର ସହ ତିନିଟା ଟିକେଟ୍ କାଟିଦେଲେ ମେଘୁ ବାବୁ । ଠିଆ ଅନିଦ୍ରାରେ, ଗନ୍ଧଭିତରେ, ରାତି ପାହିଲା । ସକାଳୁ ବସ୍ ଆସିଲା । ଫେରନ୍ତା କୋଣାର୍କ ମନ୍ଦିର ପାଖେ, ବେକରେ କ୍ୟାମେରା ପକା ଗାଇଡ୍ ନବଗ୍ରହର ମୂର୍ତ୍ତିକୁ ଦେଖାଉ ଦେଖାଉ କହିଲା-"ପ୍ଲିଜ୍ ସି, ସାର୍- ଦିସ୍ ଇଜ୍ ୱାନ୍ ଷ୍ଟୋନ୍ ଇଜିକ୍ୟୁଲଟୁ ନାଇନ୍ ଦିଅଁକ୍" । ବାବୁ ଭାବୁଥିଲେ ଦିଅଁକ୍ ଶବ୍ଦ କ'ଣ ଇଂରାଜୀ ଭାଷାକୋଷର ବହିର୍ଭୂତ ଶବ୍ଦ ! ହୋଟେଲ୍‌କୁ ଫେରିବା ବାଟରେ ଗର୍ଭିଣୀଆ କଥା ଚିନ୍ତା କରୁଥିଲେ ବାବୁ । ଆହାଃ...ଗର୍ଭିଣୀଆଟା ମିଳିଯାଆନ୍ତା କି ? ହୋଟେଲରେ ପହଞ୍ଚିବା ବେଳକୁ, ଅପେକ୍ଷା କରିଥିଲେ ଖୁଣ୍ଟିଏ । ଦେଖୁ ଦେଖୁ ଆତ୍ମୀୟତାର ହସଟାଏ ହସୁ ହସୁ କହିଲେ- ଯେ କମ୍ ଟାଉନ୍ ନୁହେଁ ଆଜ୍ଞା ! ଆମ କାଳିଆ ପରା ହୋଇ୍ ଇଣ୍ଡିଆକୁ କଣ୍ଟ୍ରୋଲ୍ କରୁଛି । ତା'ର ସମୁଦ୍ର, ମନ୍ଦିର, ମାହାର୍ଦ୍ଧ, ମାଛି, ବଳିତା, ପରିବହନରୁ ସରକାର ବହୁ ବହୁ ଟଙ୍କା ପାଆନ୍ତି । ବହୁ ବିଦେଶୀ ନୋଟ୍

କମାଚି । ମୁଁ ଗଲି ଆଜ୍ଞା- ସକାଳୁ ରେଡ଼ି ହୋଇଥିବେ, ଦର୍ଶନକୁ ଯିବା । ସକାଳୁ ମନ୍ଦିର ବାହାରିଲେ ଖୁଣ୍ଟିଏ । ଅରୁଣଖମ୍ବକୁ ଦେଖାଉ ଦେଖାଉ କହିଲେ- ଯେ ସୂର୍ଯ୍ୟ ଦେବତା ଆଜ୍ଞା । କୋଣାର୍କ ଛାଡ଼ି ମହାବିଷ୍ଣୁଙ୍କ ପାଖକୁ ରାତାରାତି ଚାଲି ଆସିଥିଲେ । ଯେ କାଶୀବିଶ୍ୱନାଥ, ଯେ ସତ୍ୟନାରାୟଣ । ନିଃସନ୍ତାନକୁ ସନ୍ତାନ ଦିଅନ୍ତି ଆଜ୍ଞା । ମୋର ଆଜ୍ଞା ସାତବରଷ ଯାଏଁ ଛୁଆ ନଥିଲା । ଗୋଟିଏ ଡାକରେ ଏବେ ଫି'ବରଷକୁ ଗୋଟେ । ତା'ର କେବେ ପେଟ ଖାଲି ନାହିଁ । ଏଇ ଦେଖନ୍ତୁ ଆଜ୍ଞା, ଯେ ବଟ ଗଣେଶ, ଯେ ମୁକ୍ତିମଣ୍ଡପ । ଗୋହତ୍ୟା, ବଧୂହତ୍ୟା, ପିତୃହତ୍ୟା, ଭୃଣ ହତ୍ୟା, ସବୁକୁ ଯେ ମାପ୍ କଲାବାଲା । ଖୋଦ୍ ରାଜା ଏଠି ମୁଣ୍ଡ ନୁଆଁନ୍ତି । ଯେ ବିମଳା ଆଜ୍ଞା, ଯାଁ'ଙ୍କ ନଖ ପ୍ରସାଦରୁ ମହାପ୍ରସାଦ । ଯେ କମଳା, ଯେ ଲକ୍ଷ୍ମୀ । ନଥିଲା ଘର ମା'ଙ୍କ କରୁଣାରୁ ପୁରିଯାଏ ଆଜ୍ଞା । ଏଇ ସମୟରେ ପହଞ୍ଚିଗଲେ ଝାଡୁନା' । ବାବୁଙ୍କ ମାନକୁ ଠାକୁରାଣୀଙ୍କୁ ଦେଉ ଦେଉ ଡାକ ଛାଡ଼ିଲେ-''ହେ, ମା, ବାବୁଙ୍କୁ ଧନ-ସଂପତ୍ତିରେ ପୋତିଦେ, ମୋ ମା'ର ଶଙ୍ଖା ସିନ୍ଦୁର ବଜ୍ର କର ।'' ବାବୁଙ୍କ ଭୋଗକୁ ଫେରାଉ ଫେରାଉ କହିଲେ ଝାଡୁନା'-ହେ ମଣି, ଆରେ ଦକ୍ଷିଣା ଦେ । ବାବୁ ପାଞ୍ଚଟଙ୍କା ବଢ଼ାଇବା ଦେଖି, ଝାଡୁନା' କହିଲେ- ଆରେ ବାଇନ, ତୁ ଜାଗର ହନୁଟା କିରେ ? ଆରେ ଏଠି ଯେତେ ଭୋଗକୁ ସେତେ ଦକ୍ଷିଣା । ଯଦି ନଦେବୁ, ଭୋଗ ନାହିଁ । ବିରକ୍ତିର ସହ ପଚିଶ ଟଙ୍କା ଦକ୍ଷିଣା ଦେଇ ଫେରୁ ଫେରୁ,ଖୁଣ୍ଟିଏ କହିଲେ- ଇୟେ, କାଳିଆର ହସପିଟାଲ୍ ଆଜ୍ଞା । ଏଠି ଚାମରସେବା ଡ଼ାକ୍ତର, ରୋଗୀଙ୍କ ସେବା କରେ । ବୃଦ୍ଧ ବୟସରେ ବି ଡାକ୍ତରର ମନଟା ଏବେ ବି ଯୁଆନ ଆଜ୍ଞା । ସବୁ ଝିଅ ହୋଡ଼ୁକୁ ସେ ନିଜର କରିପାରନ୍ତି । ଆନନ୍ଦବଜାରକୁ ପଶିଯିବା ବାଟରେ ଖୁଣ୍ଟିଏ କହିଲେ- କ'ଣ ବାବୁ ଆଟିକା ହେବ ? ଏଠା ଆଟିକା, ଇଣ୍ଡିଆର ସବୁ ମନ୍ଦିର ଆଟିକାଠାରୁ ଖୁବ୍ ଶସ୍ତା ଆଜ୍ଞା । ଆପଣ ଆଟିକା ଦେଉ ଦେଉ, ଆପଣଙ୍କ ନାମ, ଠିକଣା, ସବୁ ରୁଷ୍, ଆମେରିକା, ଜାପାନ୍‌ର କଂପୁଟରରେ ଦେଖାଯିବ । ତା'ଛଡ଼ା ଯେ ଟଙ୍କା ଦେଶ, ଜାତି ଓ ସଂସ୍କୃତିର ପ୍ରଗତି ପାଇଁ ଆଦାୟ ହେଉଛି ଆଜ୍ଞା । ଏ ଆଟିକାରେ ପିଲାଏ ପାଠ ପଢ଼ୁଛନ୍ତି । କ'ଣ ହଜାରେ ଏକ୍ କରିବା ଆଜ୍ଞା ? ଚମକି ପଡ଼ିଲେ ମେଘମହ୍ଲାର ବାବୁ । ବହୁ ତର୍କ ବିତର୍କରେ ପାଞ୍ଚଶହ ଏକ୍‌ର ଆଟିକା କରି ପୁଡ଼ିଏ ଫେଣି ଧରି ମନ୍ଦିରରୁ ବାହାରି ପଡ଼ିଲେ ବାବୁ । ହତାଶ ଓ ନୈରାଶ୍ୟ ମଧ୍ୟରେ ଫେରୁ ଫେରୁ ଖୁଣ୍ଟିଏ ନେଇଗଲେ ଏକ ଦେଖାସୁନ୍ଦର ହୋଟେଲ୍‌କୁ । ଅଥଚ ଭିତରେ ଅପରିଚ୍ଛନ୍ନ ପରିବେଶ, ଅପରିଷ୍କାର ଟେବୁଲ୍, ପ୍ଲେଟ୍ ଓ ପେଜୁଆ ଭାତ । ମିଲ୍‌କୁ ଚଢ଼ା ଦର ଦାବି କରିନେଲା ହୋଟେଲ୍‌ବାଲା । ଆଖି ଆଗରେ ଖାଦ୍ୟ ଉପରେ କମିଶନି ପାଇଗଲେ ଖୁଣ୍ଟିଏ । ବାଟରେ ଯାଉ ଯାଉ କହିଲେ- ଏ ଖଦ୍ୟ ରୁଚିଦାୟକ ନ ହେଲେବି, ଖୁବ୍ ରୋଗ-

ନିରୋଧକ ଆଜ୍ଞା । ଏ ଖାଦ୍ୟ ଖାଇଲେ, ଆଣ୍ଠୁବାତ, କମ୍ପବାତ, ଗୁଳାବାତ ଇତ୍ୟାଦି ହୁଏନି ଆଜ୍ଞା । ତେବେ ଆପଣ ଆଜି ସଂନ୍ଧ୍ୟାରେ ସମୁଦ୍ର ବୁଲା ସାରିଦିଅନ୍ତୁ ଆଜ୍ଞା । ସକାଳୁ ଶିବ ମନ୍ଦିର ଯିବା । ସଂନ୍ଧ୍ୟାରେ ପିଲାଙ୍କୁ ଧରି ସମୁଦ୍ର ବାହାରିଲେ ମେଘୁବାବୁ । ଅଥଚ କବି, ଗାଳ୍ପିକଙ୍କ ସମୁଦ୍ରର ସ୍ୱରକୁ ଅନୁଭବ କରିପାରିଲେ ନାହିଁ । ସବୁଆଡ଼େ ହୋଟେଲର ନଳାପାଣି, କୁକୁର ଓ ଘୋଡ଼ାଙ୍କ ଝାଡ଼ା । ଦୂଷିତ ପରିବେଶ । ଦିନ ଦି'ପହରରେ ଓଃ... କି ଅଶ୍ଳୀଳତା, ନଗ୍ନତା !! ଚାରିଆଡ଼େ ବଂଗଳା ପୋଷ୍ଟର ବୋର୍ଡ଼ । ସତେ ଯେମିତି ଏହା ଅନ୍ୟ ଏକ ପଶ୍ଚିମବଂଗ । ସମୁଦ୍ରରୁ ନୀରବରେ ଫେରି, ସକାଳ ପାଇଁ ପ୍ରସ୍ତୁତ ହେଲେ ବାବୁ । ଶିବମନ୍ଦିରରେ ପହଞ୍ଚୁ ପହଞ୍ଚୁ, କଣ୍ଟୁ ପଣ୍ଡା କହିଲେ- ହେ ବାଇନ୍ କ'ଣ ବାଲ ପଡ଼ିବ ? ଦେ, ଏଠି ଶହେ ଏକ୍ ଦେ । ସେଠି ସାଗର କୂଳେ ଏକୋଇଶ ଦେ । ଦୁଆରେ ପାଣିମେକାପେ କହିଲେ- କ'ଣ ବାଇ, ଯାଚଣ୍ଟା ଅଛି ? ଏଠି ନାଗକୁ ଶହେ ଏକ୍, ଡମ୍ଫକୁ ଏକାଅଣୀ, ଢମଣାକୁ ଏକାବନ । ତା'ଛଡ଼ା ଆଖିକୁ ଏକଷଠି, ହାତ-ଗୋଡ଼କୁ ଏକ୍‌ଚାଳିଶ, ନାକ-ପାଟିକୁ ଏକତିରିଶ । ଏସବୁ ବେପାର ସରିବା ବେଳକୁ ପହଞ୍ଚି ଗଲେ ମୁଣ୍ଡି ମହାପାତ୍ରେ । କହିଲେ- ବାବା, ସଂକଳ୍ପ କଲୁ ? ଆରେ ଆ... ଧ... ଏ ପାତ୍ରିକୁ, ଧଅ । ଗୁଆ, ଚାଉଳ, ଫୁଲ ପାତ୍ରୀରେ ପକା । ଆରେ ଏଠି ସଂକଳ୍ପ କଲେ ପିତୃପୁରୁଷ ଉଦ୍ଧାର ପାଆନ୍ତି, ସନ୍ତାନର ରୋଗ ଦୂର ହୁଏ । କହ- "ହେ ପ୍ରଭୁ ଭୋଳାଶଙ୍କର, ହେ ରୋଗ ନାଶକାରକ, ମୋ ପିଲାଙ୍କୁ ରୋଗରୁ ମୁକ୍ତି କର । ମୋ ପିତୃ-ମାତୃ ପୁରୁଷଙ୍କୁ ସୁସ୍ଥ ରଖ । ଏ ନେଇ ଆଜି, ଏଇଦିନ, ଏଇ ନକ୍ଷତ୍ର, ଏଇ ବେଳାରେ, ମୁଁ ମୋ ପିଲାଙ୍କ ହାତରେ ଶହେଏକ୍ ଦେବାର ସଂକଳ୍ପ କରୁଛି ।" ପରଦିନ ରଥଯାତ୍ରାରେ ସ୍ତ୍ରୀ-ପିଲାଙ୍କ ମୁଣ୍ଡକୁ ରଥରେ ବାଡାଇ, ଜବରଦସ୍ତ ପାଟିରେ ଗୁଡ଼ କୋରା ପୁରାଇ, ବେକରେ ଗୋଲାପି ରଂଗବୁଡ଼ା ଗଜ୍‌କନାକୁ ଗଳାଇ, ତା ବଦଳରେ ସାର୍ଟରୁ ପଇସା ଟାଣି ନେଲେ ପଣ୍ଡାଏ । ହୋଟେଲ୍‌କୁ ଫେରି ଖୁବ୍ ବ୍ୟସ୍ତ ହୋଇ ପଡ଼ିଲେ ବାବୁ । ସକାଳୁ ଗାଁକୁ ଫେରିବାକୁ ପଡ଼ିବ । ହୋଟେଲ୍ ଭଡ଼ା, ବସ୍‌ଭଡ଼ା ଦେବାକୁ ହେବ । ଖୁଣ୍ଟିଏଙ୍କୁ କହି, ହାତଘଣ୍ଟା ଓ କୋକିଳକଣ୍ଠୀଙ୍କ ମୁଦି ବିକିଦେଲେ ମେଘୁବାବୁ । ବାବୁଙ୍କ ଏ ଅବସ୍ଥା ଦେଖି ଖୁଣ୍ଟିଏ କହିଲେ- ବ୍ୟସ୍ତ ହୁଅନ୍ତୁନି ଆଜ୍ଞା । ଏ ଶୁଖିଲି ମାହାର୍ଦ୍ଦ, ନିର୍ମାଲ୍ୟ ଘରକୁ ନେଇଯାଆନ୍ତୁ । "ମୋ ଠିକଣା ନେଇଯାଆନ୍ତୁ ଗଲେ ଟଙ୍କା ପଠାଇଦେବେ । ଆରେ ଆପଣ ପରା ଗର୍ଭଣିଆର ଲୋକ । ସେ ପରା ମୋ ଭାଇ, ବଂଧୁ, ସବୁକିଛି । ଆପଣଙ୍କଠି ମୋର ସନ୍ଦେହ ଅଛି !!

ସକାଳୁ ବସ୍‌ରେ ଯାଉ ଯାଉ, ମୁକ୍ତିର ଆନନ୍ଦ ଉପଲବ୍ଧି କରୁଥିଲେ, ମେଘମହ୍ଲାର ବାବୁ । ଏଇତେବେ ଡ଼ୋରି ଲାଗିବା କଥା ! ଏଇ ତେବେ ସାର୍ବଜନୀନ କମିଶନି

ଯୋଜନା !! ତାଙ୍କର ମନେ ପଡୁଥିଲା, ପିଲାଦିନ୍ ବହିର କବିତା- "ଏଇ ଦିନ ଆମେ ସ୍ୱାଧୀନ ହେଲୁ । ବିଦେଶୀ ହାତରୁ ଶାସନ ନେଲୁ" । ତେବେ ଏ ଶୋଷଣ, ନିର୍ଯ୍ୟାତନା, କ'ଣ ବ୍ରିଟିଶ୍‌ଠାରୁ କମ୍ !! ଏନ୍, ସେଇ ଧର୍ମର ସହର, ଯେଉଁଠି, ରହିବା, ଖାଇବା ସେବା, ଧର୍ମ ସବୁଥିରେ ଚାଲିଛି, କିଛି ଲୋକଙ୍କ ଲୁଟ୍‌ତରାଜ । ଏଇ ସେଇ ପବିତ୍ର ସହର, ଯେଉଁଠି କିଛି ଚାକିରିଆ ପ୍ରବଚକ, ଧର୍ମ ବିକି ପଇସା କମଉଛନ୍ତି । ଏଇ ସେହି ପୁଣ୍ୟକ୍ଷେତ୍ର ଯେଉଁଠି ଈଶ୍ୱରର ପ୍ରବେଶରେ ପରିବେଶ ଶୁଦ୍ଧି ପାଇଁ ପଚାଚିଙ୍ଗୁଡ଼ିର ଗନ୍ଧ । ମନ୍ଦିର ଦୁଆରେ ନଗ୍ନନାରୀ, ଶହ ଶହ ଭିକାରୀ, ଅବହେଳିତ ଡାକ୍ତରଖାନା । ଏଇ ସେହି ଶୋଭାମୟ ସମୁଦ୍ରରର ସହର, ଯେଉଁଠି ନଳାପାଣି,କୁକୁର ମଳ ସମୁଦ୍ରର ଶ୍ରୀବୃଦ୍ଧି କରେ । ଏଇ ସେହି ଆଦିଶଙ୍କରଙ୍କ ଆଦ୍ୟପୀଠ- ଗୋବର୍ଦ୍ଧନ ପୀଠ । ଯେଉଁଠି ମଠ ସଂପତ୍ତିକୁ କିଛି ହିନ୍ଦୁମାନେ ମାଡ଼ିବସନ୍ତି, କୁକୁଡ଼ା ଗୋଡ଼, ଅଣ୍ଡାଖୋଳ, ମାଛକାତିକୁ ମଠ-ମନ୍ଦିର ପରିସରକୁ ଫୋପାଡ଼ନ୍ତି । ମେଘୁବାବୁ ଭାବୁଥିଲେ- ଦେଶଧ୍ୱଂସ ପାଇଁ, ଆଉ ବହିଃ ଶତ୍ରୁର ପ୍ରୟୋଜନ ନାହିଁ । ସେ ଦେଖୁଥିଲେ- ଠାକୁରଙ୍କ ଆଖି ଆଗଟାରେ, କିପରି ଦେଶର ସଭ୍ୟତା ସଂସ୍କୃତି, ନୀତି-ନିୟମ, ସେବା, ଧର୍ମ ସବୁକିଛି ନଷ୍ଟଭ୍ରଷ୍ଟ ହୋଇଯାଉଛି ।

ବସ୍ ପହଞ୍ଚିଲା, ଗାଁ ମୁଣ୍ଡରେ । ହିଡ଼ ମୁଣ୍ଡେ, ବୋଉ ହଠାତ୍ ଭୋ ଭୋ କରି କାନ୍ଦି ଉଠିଲା । ବୋଉର କାନ୍ଦ ଦେଖି, ହାରା ନାନୀ, ତିଳ ମାଉସୀ, ସାବି ଖୁଡ଼ୀ ମଧ କୋହ ଉଠାଇ କାନ୍ଦି ଉଠିଲେ । ଭୟ କରିଗଲେ ମେଘୁବାବୁ । "ତେବେ କ'ଣ ବାପା ? ନାଁ... ଯଦି ହୋଇଥାନ୍ତା, ବୋଉ ହାତରେ.... ତେବେ ???" ବୋଉ ପାଖକୁ ଗଲେ ମେଘମହ୍ଲାର ବାବୁ, କୋକିଳକଣ୍ଠୀ ଓ ପିଲାମାନେ । ସମସ୍ତଙ୍କୁ ଛାତିରେ ଜାକିଧରି ବୋଉ କାନ୍ଦୁଥିଲା- ତମକୁ କେଉଁ ଭାଲୁ ଚାଟିଦେଲାରେ ?

ବୋଉ ପ୍ରଶ୍ନର ଉତ୍ତର ଦେଇପାରୁ ନଥିଲେ ମେଘୁବାବୁ । ସେ ଭାବୁଥିଲେ କିଭଳି କହିବେ, ବାପା ଓ ପିଲାଙ୍କ ପାଇଁ, ସଂଗ୍ରାମ କରୁ କରୁ ମଣିଷଭାଲୁ ସେମାନଙ୍କୁ ଏପରି ଚାଟିଦେଇଛି ବୋଲି । ପୋଷ୍ଟ ପିଅନ ଚିଠି ଦେଇଗଲା । ଗର୍ଭଣିଆ ଲେଖିଥିଲା-" ସେଦିନ ଅପେକ୍ଷା କରି ଫେରିଲି । କ'ଣ ଅସୁବିଧା ହେଲା ବୋଧେ ।"

ମେଘବାବୁ ଭାବୁଥିଲେ, "ମଣିଷଭାଲୁ"ର କଥା । ସତରେ କିଛି ମଣିଷଙ୍କ ଦୁର୍ବ୍ୟବହାର, ନିର୍ଯ୍ୟାତନା ଓ ଶୋଷଣ ବଦଳରେ ଆଜି, ପୁରୀ, ତା'ର ଶ୍ରୀମନ୍ଦିର, ସମୁଦ୍ର କେତେ ଘୃଣ୍ୟ ହୋଇ ଯାଇଛି !! କେତେ ଜାତି, ସଂପ୍ରଦାୟ ନିନ୍ଦିତ ହେଉଛନ୍ତି !!!






୧୯୯୭ ମସିହାଟା ଯେ ଦେଶର ବହୁ ବହୁ ଲୋକଙ୍କୁ ଉପରକୁ ଟେକିଦେବ ଏ ନେଇ ନିଶ୍ଚିତ ଥିଲେ ମଦ୍‌ହୋସ୍‌ବାବୁ । ରାତି ପାହିଲେ ନିର୍ବାଚନ । ନୀଳକିଲ୍ଲାଠାରୁ ପ୍ୟାରେଡ୍ ପଡ଼ିଆ ଯାଏଁ, ଦୂରଦର୍ଶନ ଠାରୁ ପଞ୍ଚାନନ ଅଫିସ୍ ବାରଣ୍ଡା ପର୍ଯ୍ୟନ୍ତ କେତେ ନେତା ନୂଆ ନୂଆ ଯୋଜନାର ଘୋଷଣା କରିବେ, ପୋଷ୍ଟର ମାରିବେ । ବିରୋଧୀ ଦଳର କୁଜିନେତାମାନେ ପଲା ଧରି ଦେଖି ଦଳବଦଳ କାର୍ଯ୍ୟକ୍ରମ ରିହର୍ସଲ କରୁଥିବାବେଳେ, ଚଣ୍ଡିଚାମୁଣ୍ଡା ତଥା ବେକାର ଯୁବକ ରଜାଙ୍କ ଇଜ୍ଜତ ପାଇଁ ନିର୍ବାଚନ ରଣାଙ୍ଗନରେ ଖଣ୍ଡାତଲୱାର ଧରି ଯୁଦ୍ଧ କରିବାର ଅଭ୍ୟାସ ଆରମ୍ଭ କରିଦେଇଥିଲେ ।

ଦେଶରକ୍ଷାଙ୍କ ଚିରାଚରିତ ଗ୍ରାମ୍ୟବିକାଶ, ମହିଳାବିକାଶ ଓ ଶିଶୁବିକାଶ ସହ "ଗରିବୀ ହଟାଓ" ସ୍ଲୋଗାନ୍ ଭିତରେ, ଏଥରର ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ଯୋଜନା ଓ ତୁରନ୍ତ ଲାଗୁ ହେବାର ଘୋଷଣା ଶୁଣି, ଖୁସିରେ ଫାଟି ପଡ଼ିଲେ ମଦ୍‌ହୋସ୍ ବାବୁ । ରାତି ଅଧଟାରେ ସ୍ୱାମୀଙ୍କ ରାକ୍ଷସିଆ ହସ ଦେଖି ଭୟରେ ଉଠିଗଲେ ଭାଙ୍ଗୋଇ ଦେବୀ ।

ଚମ୍‌କି ପଡ଼ିଲେ ଦୁଇ ପୁଅ ଗଂଜଡ଼ା ଓ ଅଫିମା । ହସି ହସି ବେଦମ୍ ହୋଇ ଯାଉ ଯାଉ ମଦ୍‌ହୋସ୍ ବାବୁ କହିଲେ- ଶୋଇପଡ଼ ପିଲାଏ, ରାତି ପାହିଲେ ରାମରାଜ୍ୟ ଆସିଯିବ । ଲୋକେ ମୋତେ ମହାମାନ୍ୟ ବାବୁ ଡାକିବେ । ମୋ ରାଜ୍ୟର ପିଲାଏ ଏଣିକି ଆଉ ଭୋକିଲା ରହିବେ ନାହିଁ, ଅଶିକ୍ଷିତ ରହିବେ ନାହିଁ, ଭୋକ ବିକଳରେ ପାଠ ପଢ଼ା ଛାଡ଼ି, ପିଲେ ଆଉ ସ୍କୁଲରୁ ଘରକୁ ଉଠି ଆସିବେ ନାହିଁ । ପିଲାଏ ଶୋଇଗଲେ । ପତ୍ନୀ କହିଲେ- ହଇଓ, ତୁମେ କି ରାମରାଇଜ କଥା କହୁଛ ବା ? ଏ ଯୋଜନାର ଘୋଷଣା ସବୁ ତାହା ମିଛ. ମୁଁ ଏ ସବୁ ଜାଣିନି ! ମୋ ଭାଇ ଯାଦୁଆ.... ସେ ପରା କହୁଥିଲା, ରଜାଙ୍କ ଘୋଷଣା ପାଣିରେ ଗାର ସଙ୍ଗେ ସମାନ, ସେ କହୁଥିଲା- ଘନ ପ୍ରକଳ୍ପରେ କାମ କରି କରି କୁଆଡ଼େ ତାଙ୍କ ବୃକ୍ଷରୋପଣ ଓଡ଼ିଶା ଡେଇଁ ଆନ୍ଧ୍ରା ଆଡ଼େ ଗଲାଣି । ଜିଲ୍ଲା ସାକ୍ଷର ନାଁରେ କୋଟି କୋଟି ଟଙ୍କା ଖର୍ଚ୍ଚ ହେଲା । ଟିଭିରେ ଲୋକ କହିଲେ... ଅ...କ...ଚକ...ଅଖ । ଏବେ ପୁଣି ଯାହାକୁ ସେଇଆ । ପ୍ରତି ମାସରେ ତା' ଅଫିସିର ଗଛଇଗା ଭାଉଚରରେ ଏବେ ବି ହଜାର ଟିପ ଚିହ୍ନ । ହଇଓ କି ନେତା ହେଲ ଯେ ପିଲେ ସେଇ ଓଳିଏ ଓପାସ୍ । ପାଣିଚି ପାଇଁ ଖଣ୍ଡେ ଲୁଗା କରିପାରୁନ, ମୋ ପାଇଁ ଚେନେ ସୁନା କରିପାରୁନ, କ'ଣ ନା ରାମରାଇଜ ହେବ । ପୁଣି ହସିଲେ ମଦ୍‌ହୋସ୍ ବାବୁ । ହସୁ ହସୁ କହିଲେ ବୁଝିଲ, ମୋତେ ଖାଲି ଦିମାସେ ସମୟ ଦିଅ । ଦେଖିବ, ରାମରାଜ୍ୟ ହେଉଛି ନା ନାହିଁ ?

କଥାଟା ସତ ପରି ଲାଗିଲା । ସକାଳୁ ସକାଳୁ ସାହେବ ଜିପ୍‌ଧରି ପହଞ୍ଚିଗଲେ । ସଦ୍ୟ କିଣା ଧୋତି ପଂଜାବୀ ସହ ନୂଆ କିଣା ପନ୍ଦର ଟଂକିଆ ଚଷମା ଲଗାଇ ଜିପ୍‌ରେ ଲଥାଙ୍ଗ କରି ବସିପଡ଼ିଲେ ମଦ୍‌ହୋସ୍ ବାବୁ । ରାତିରେ ଗାଁରେ ସଭା ହେଲା । ଗାଁ ଯାକର ଅଭିଭାବକ, ପିଲେ, ମାଷ୍ଟର ମାଷ୍ଟ୍ରାଣୀ ସଭାରେ ଯୋଗଦେଲେ । ଉଦ୍‌ଘାଟନୀ ଭାଷଣ ଦେଇ ସାହେବ୍ କହିଲେ- ପ୍ରିୟବନ୍ଧୁମାନେ, ଆପଣମାନେ ଜାଣି ଖୁସିହେବେ, ଆମଦେଶ ରଜା, ରାଜ୍ୟରେ ଶିଶୁବିକାଶ ସହ, ମହିଳା ଅର୍ଥାତ୍ ବିଧବା ମହିଳାମାନଙ୍କ ଥଇଥାନ ପାଇଁ ଗୋଟିଏ ଗୁଳିରେ ତିନୋଟି ଶିକାର କରିପାରିଛନ୍ତି । ପ୍ରଥମରେ ସ୍କୁଲ ପିଲାମାନଙ୍କୁ ମାଗଣା ଭୋଜନ ଦିଆଯିବ, ଯଦ୍ୱାରା ଆମ ଗାଁ ରୁଗ୍‌ଣ ପିଲାଙ୍କ ଦେହରେ ମାଉଁସ ଲାଗିବ । ସେମାନେ ବଳିଷ୍ଠ ହେବେ । ଦ୍ୱିତୀୟରେ ମାଗଣା ଖାଇ ପିଲାଏ ପଢ଼ି, ଉଚ୍ଚଶିକ୍ଷିତ ହେବେ ଓ ତୃତୀୟରେ ଏ କାର୍ଯ୍ୟରେ ଦୁଇଜଣ ବିଧବା ମହିଳାଙ୍କୁ କର୍ମସଂସ୍ଥାନ ଯୋଗାଇ ଦିଆଯିବ । ମୁଖ୍ୟ ଅତିଥି କରଦ ରଜା କହିଲେ- ମୋର ବନ୍ଧୁ ଓ ବାନ୍ଧବୀମାନେ, ଆମ କାର୍ଯ୍ୟକ୍ରମର ସଫଳ ରୂପାୟନକୁ ଆଗୁଆ କଂପ୍ୟୁଟରାଇଜଡ୍ କରି ଦେଖିବା ପରେ, ବର୍ତ୍ତମାନ ଦିଲ୍ଲୀ

ମହାରଜା ଜାତୀୟ ସ୍ତରରେ ଏହି ଭୋଜନ ଯୋଜନା କାର୍ଯ୍ୟକାରୀ କରିବାକୁ ସ୍ଥିର କରିଛନ୍ତି । ଯଦ୍ୱାରା ଦେଶର ପାଞ୍ଚଲକ୍ଷ ଗ୍ରାମ୍ୟ ସ୍କୁଲର ଲକ୍ଷ ଲକ୍ଷ ଛାତ୍ର ଛାତ୍ରୀଙ୍କୁ ବାର୍ଷିକ ପଚିଶଲକ୍ଷ ଟନ୍ ଖାଦ୍ୟଶସ୍ୟ ଯୋଗାଇ ଦିଆଯିବ । ଏହି କାର୍ଯ୍ୟକ୍ରମ ଦ୍ୱାରା ପିଲାଏ ପଢ଼ିବେ, ଆନନ୍ଦରେ ଖାଇବେ, ଯଦ୍ୱାରା ସେମାନଙ୍କର ମନ ଆନନ୍ଦ ଦେଖି ସେମାନଙ୍କ ପିତାମାତା ଖୋଲା ହୃଦୟରେ ଆଗାମୀ ନିର୍ବାଚନରେ ଭୋଟ ଦେବାକୁ ଯାଇ ପାରିବେ । ଶେଷରେ ମଦ୍‌ହୋସ୍ ବାବୁ କହିଲେ, ଏଥର ଆମ ଗାଁ ରାମରାଜ୍ୟରେ ପରିଣତ ହେବ । ଭୋଜନର ପୁଷ୍ଟିକର ଖାଦ୍ୟ ଖାଇ ଆମ ପିଲାଏ ସୁସ୍ଥ ସବଳ ହୋଇ ଏସିଆଡ୍ ଓ ଅଲମ୍ପିକ୍‌ରେ ଯୋଗଦେବାର ପ୍ରେରଣା ପାଇବେ । ନିୟମିତ ଖାଦ୍ୟ ଖାଇ, ପାଠ ପଢ଼ି, ଆମ ପିଲାଏ ବଡ଼ ବଡ଼ ଇଂଜିନିୟର, ଡାକ୍ତର ଓ ଅଫିସର୍ ହେବେ । ସୁଷମବଣ୍ଟନ ଓ ଶୃଙ୍ଖଳା ରକ୍ଷା ପାଇଁ ସ୍କୁଲର ପ୍ରଧାନ ଶିକ୍ଷକଙ୍କ ସହ ଗାଁର ଦୁଇଜଣ ମୁଖିଆ ଏ ଭୋଜନ କମିଟିର ସଭ୍ୟ ରହିବେ । ସେମାନଙ୍କ ସ୍ୱାକ୍ଷରରେ ସବୁ କାମ ହେବ । ଯଦ୍ୱାରା ଭବିଷ୍ୟତରେ ଆଉ କମିଶନ୍ ବସିବାର ଆବଶ୍ୟକତା ପଡ଼ିବ ନାହିଁ । ତାଳିରେ ଫାଟିପଡ଼ିଲା ସଭାସ୍ଥଳ । ପରଦିନ ଗରିବ ପିଲାଏ ବିନା ବହିପତ୍ରରେ ସ୍କୁଲ ଆସିଲେ ।ଜଣାଗଲା ସତେଯେପରି ରାମରାଜ୍ୟ ଆରମ୍ଭ ହେଲା । ଗ୍ରାମ୍ୟ କମିଟି ଗଢ଼ାଗଲା, ଯାହାର ମୁଖ୍ୟ ରହିଲେ ମଦ୍‌ହୋସ୍ ବାବୁ । ସକାଳୁ ଗାଁରୁ ଚାରୋଟି ଶଗଡ଼, ସାହେବ୍‌ଙ୍କ ଅଫିସ୍ ଆଡ଼େ ମୁହାଇଁଲା । ବଡ଼ସାହେବଙ୍କ କମିଶନି କଟି, ଆସିଲା ଚାଉଳ, ଡାଲି । ସ୍କୁଲର ପ୍ରଧାନ ଶିକ୍ଷକ ମାର୍କଣ୍ଡ ବାବୁ ରଜାଙ୍କ ଆଦେଶନାମା ପଢ଼ିଲେ । ପ୍ରତି ପିଲାଙ୍କୁ ଦିନକୁ ଦେଢ଼ଶ ଗ୍ରାମ୍ ଚାଉଳ, ପନ୍ଦର ଗ୍ରାମ୍ ଡାଲି, ଲୁଣ ହଳଦୀ, ପରିବହନ, କାଠ ବାବଦେ ମୁଣ୍ଡ ପିଛା ପନ୍ଦର ପଇସା, ରନ୍ଧା ରନ୍ଧି ପାଇଁ ମୁଖ୍ୟ ମହିଳାକର୍ମୀଙ୍କୁ ମାସକୁ ତିନିଶହ ଟଙ୍କା ଓ ସହକାରିଣୀଙ୍କୁ ମାସିକ ଦେଢ଼ଶ ଟଙ୍କା ଦିଆଯିବ । ଶେଷରେ ବି:ଦ୍ର ଲେଖାଥିଲା- "ମଗାମଗି କରି ଡେକ୍‌ଚି, ହାଣ୍ଡି ଆଣି କାମ ଚଳାଅ, ପରେ ଏହା ପର୍ଯ୍ୟାୟ କ୍ରମେ ଯୋଗାଇ ଦିଆଯିବ" । ବହୁ ଜୁହାବୋଲା ହୋଇ ଗାଁ ମୁଖିଆଙ୍କ ଘରୁ ହାଣ୍ଡି ଡେକ୍‌ଚି ଆସିଲା । ରୋଷେଇ ଘର ଅଭାବରେ, ସ୍କୁଲର ମୁକ୍ତ ଆକାଶ ତଳେ ଚୁଲ୍ଲି ଲାଗିଲା । ପିଲାଏ କାଠ ଅଭାବରେ ଘରୁ ଭଙ୍ଗା କାଠ, ଦଦରା ଚଉକାଠ, ବାଉଁଶ ଫାଳିଆ ଆଣିଲେ । ପିଲାଙ୍କ ଘର ବାଡ଼ିରୁ କଦଳୀପତ୍ର କଟାଗଲା । ହେଲେ ରାନ୍ଧିବ କିଏ ? ଏତେ କମ୍ ଟଙ୍କାରେ ତ କିଏ ରାନ୍ଧିବେନି । ଶେଷକୁ ସହର ତଳି ଏରିଆରୁ ଦୁଇଜଣ ଭିକାରୁଣୀଙ୍କୁ ଖାଦ୍ୟ ଲୋଭ ଦେଖାଇ ଅଣାଗଲା । କିନ୍ତୁ ସେମାନଙ୍କର ଅପରିଚ୍ଛନ୍ନ ଚିରା ଲୁଗା ଦେଖି ଜଣେ କହିଲେ- ଆଜ୍ଞା, ଏମାନେ

ରାନ୍ଧିଲେ ପରିବେଶ ପ୍ରଦୂଷଣ ହେବ, ପିଲାଏ ନାକ ଟେକିବେ । ଏସବୁ ଦେଖି, ମଦ୍‌ହୋସ୍ ବାବୁଙ୍କ ପ୍ରସ୍ତାବରେ ପ୍ରଥମ ଦଫାରେ ବସ୍ତେ ଚାଉଳ ବିକାଯାଇ ଭିକାରୁଣୀକୁ ଶାଢ଼ୀ, ସାବୁନ ଯୋଗାଇ ଦିଆଗଲା । ରୋଷେଇ ଆରମ୍ଭ ହେଲା । ପିଲାଏ ପାଠ ଛାଡ଼ି ଦିନ ଦିଟାରୁ ରୋଷେଇ ଦେଖିଲେ । ଶ୍ରେଣୀ ଶିକ୍ଷକଙ୍କ ସହ, କମିଟି ସଭ୍ୟ ସ୍କୁଲ୍ ଘରେ ଶାନ୍ତିରେ ବସି ତାସ୍ ଖେଳିଲେ । ରୋଷେଇ ସାରି ଖାଦ୍ୟ ବଣ୍ଟା ହେଲା । ନିମ୍ନମାନର ଗୋଡ଼ି ଧାନମିଶା ଚାଉଳ ଓ ଗମ୍ଭୁରାଡ଼ାଲିର ଖେଚୁଡ଼ି ସମସ୍ତେ, ଖାଇଲେ । କିଏ ଅ.... ଅ.... କଲା ତ, କିଏ ଦାତରେ ଗୋଡ଼ି ବାଜିବା ଦେଖି ଅଧାରୁ ଉଠିଲା । ଆରମ୍ଭ ହେଲା ହୋ ହଲ୍ଲା । ଯୋଜନା ବ୍ୟସ୍ତତାରେ ସାମନ୍ୟ ବିଦେଶୀ ପାନୀୟ କରିଥିବା ମଦ୍‌ହୋସ୍ ବାବୁଙ୍କ ହୋସ୍ ଆସିଲା । ରାମରାଜ୍ୟ ପ୍ରତିଷ୍ଠାର ସ୍ୱପ୍ନ ଦେଖୁଥିବା ମଦହୋସ୍ ବାବୁ, ରାତିରେ କମିଟି ସଭା ଡାକିଲେ । ଜଣେ କହିଲା- ଆମ ପିଲାଏ କ'ଣ ଏ ଅଖାଦ୍ୟ ଖାଇ ହଇଜାରେ ଆକ୍ରମିତ ହେବେ । ଆଗ ସ୍କୁଲଘର କର, ରୋଷେଇ ଘର କର, ପରେ ଚୁଲ୍ଲି ଲାଗିବ । ଆଉ ଜଣେ କହିଲା, ସ୍କୁଲରେ କଳାପଟା ନାହିଁ, ଆଜବେଷ୍ଟସ୍ ଭାଙ୍ଗି ପାଣିଗଳୁଛି, କ'ଣ ମିଳୁଛି ଏ ଯୋଜନାରୁ ? ଆଉଜଣେ କହିଲା- କେତେଦିନ ପିଲେ ଘରୁ କାଠ ଆଣିବେ ? ସ୍କୁଲର ବାଡ଼ ନାହିଁ ବୋଲି ରୋଷେଇ ଆରମ୍ଭରୁ ପତର ଫିଙ୍ଗାଯାଏ ଷଣ୍ଢ ଗାଈଙ୍କର ମେଳଣ ହେଉଛି । ଏଠି କି ପଢ଼ା ହେବ ? ଆଉ ଜଣେ କହିଲା- ଅଗଷ୍ଟ ମାସ ହେଲାଣି ପିଲାଙ୍କ ବହି ମିଳୁନି, କ'ଣ ନା ଯୋଜନା ହେବ । ମଦ୍‌ହୋସ୍ ବାବୁ କହିଲେ- ଯଦି ଆପଣମାନେ ଚାହିଁବେ ସବୁ ସମ୍ଭବ ହେବ । ମୋ ଇଚ୍ଛା, କମିଶନି କଟିବା ପରେ ଯାହା ଆସିଛି, ସେଥିରୁ କିଛି ବିକି ପ୍ରତି ସପ୍ତାହରେ ବରଂ ପିଲାଙ୍କୁ ନଡ଼ିଆ ପକା ବାସୁମତୀ ମାର୍କା ଖେଚେଡ଼ି ଡାଲମା ଦେବା । ପିଲାଙ୍କୁ ଏ ଅଖାଦ୍ୟ ଦେଇ ହଇଜା ହେବାକୁ ଦେବାନି । ତା'ଛଡ଼ା ଯଦି ଆପଣମାନେ ଏକମନ ଏକପ୍ରାଣ ହୋଇ ମୋ କାନ୍ଧରେ କାନ୍ଧ ମିଳାନ୍ତି, ତେବେ ସବୁ ହେବ । ଗାଁ ମୁଖିଆ କହିଲେ, ଏସବୁ ମିଛ କହି, ମିଛ ଲେଖି ଆମର ଲାଭ କ'ଣ ? ପ୍ରଧାନ ଶିକ୍ଷକ କହିଲେ- ବରଂ ଏ ଖାଦ୍ୟଶସ୍ୟ ବିକି ଭଙ୍ଗାସ୍କୁଲ ପାଇଁ ଆଜବେଷ୍ଟସ୍ ଓ କଳାପଟା କିଣା ସହ ବାଡ଼ ମରାମତି କରିବା ଭଲ । ମଦ୍‌ହୋସ୍ ବାବୁ କହିଲେ- ଏହାର ମଧ ସମାଧାନ ପନ୍ଥା ଅଛି । ଆମେ ଚାଉଳ ଡାଲିର ବିକ୍ରିଲବ୍ଧ ଅର୍ଥରୁ ଅଧେ ପିଲାଙ୍କ ପାଇଁ ଲଗେଇ, ତନ୍ମଧ୍ୟରୁ ସ୍କୁଲ ପାଇଁ ଅଧେ ଖର୍ଚ୍ଚ କରାଇ, ଆମେ ଅଧେ ନେଇପାରିବା । ତା' ପରଦିନୁ ସକାଳୁ ସଭିଏଁ ସାହେବଙ୍କ ଘରକୁ ଯାଇ ଏ ପ୍ରସ୍ତାବ ଦେଲେ । ସାହେବ୍

କହିଲେ- ମିଛ କାଗଜ କରି ମୁଁ କ'ଣ ଥାନକୁ ଯିବି ? ସସ୍‌ପେଣ୍ଡ ହେବି ? ମଦ୍‌ହୋସ ବାବୁ ସାହେବ୍‌ଙ୍କ କାନରେ ଫିସ୍ ଫିସ୍ କରି କ'ଣ କହିଲେ । ସାହେବ୍ କହିଲେ- ଯଦି ଆପଣମାନେ ରାଜି ତେବେ ମୁଁ ସବୁ ପ୍ରକାର ରିସ୍କ ନେବାକୁ ପ୍ରସ୍ତୁତ । ତେବେ ସେ ଟଙ୍କାରୁ ସ୍କୁଲରେ କିଛି ଖର୍ଚ୍ଚ କରିବା ସହ ଆସନ୍ତା ବର୍ଷ ପାଇଁ ପିଲାଙ୍କୁ ମାଗଣା ବହିପତ୍ର ଯୋଗାଣ କରି ପାରିଲେ, ଆମେ ବର୍ତ୍ତିଯାଇ ପାରିବା । ସମସ୍ତଙ୍କ ମନକୁ ଏହା ପାଇଲା । ସ୍ଥିର ହେଲା ଶହେ ଟଙ୍କାରୁ ଦଶଟଙ୍କା ବଡ଼ ସାହେବ୍ ନେବାପରେ ବଳକା ନବେ ଟଙ୍କାରୁ ଦଶଟଙ୍କା ସାହେବ୍, ଦଶଟଙ୍କା ମଦହୋସ୍ ବାବୁ, ପାଞ୍ଚଟଙ୍କା ଲେଖାଏଁ କମିଟି ସଭ୍ୟ ନେବେ । ବଳକା ଷାଠିଏ ଭାଗ ସ୍କୁଲରେ ରହିବ । ସେ ଷାଠିଏ ଭାଗରୁ ତିରିଶିଭାଗ ଖାଦ୍ୟ, ପନ୍ଦର ଭାଗ ଗୃହ ନିର୍ମାଣ ଓ ପନ୍ଦର ଭାଗ ବହି କିଣାରେ ଖର୍ଚ୍ଚ ହେବ ।ସାହେବଙ୍କ ପ୍ରସ୍ତାବ ଅନୁଯାୟୀ ଆଗାମୀ ବର୍ଷ ପ୍ରାରମ୍ଭରେ କରଦ ରଜାଙ୍କ ସହ ଖାଦ୍ୟରଜା ଓ ଶିକ୍ଷାରଜାଙ୍କୁ ଡକାଯାଇ, ସଭାକରି, ମାଗଣା ଭୋଜନ କାର୍ଯ୍ୟକ୍ରମର ଐତିହାସିକ ସଫଳତା ସହ ମାଗଣା ବହିଯୋଗାଣ କାର୍ଯ୍ୟକ୍ରମ ଆରମ୍ଭ ହେବାର ସ୍ଥିର ହେଲା ।

ତେବେ, ଉଚ୍ଚସ୍ତରୀୟ ତଦନ୍ତ କମିଟି ମୁହଁରୁ ବଞ୍ଚିବା ପାଇଁ ମାସକ ପାଇଁ ଏ ଭୋଜନ ଯୋଜନା ଚାଲୁ ରହିଲା । ପରଦିନ ପୁଣି ଚାଲିଲା ଭୋଜନ କାର୍ଯ୍ୟକ୍ରମ । ପିଲାଟିଏ ପ୍ରଧାନ ଶିକ୍ଷକଙ୍କୁ କହୁଥିଲା- ଘରେ ମୋ' ମା' ଓ ଭଉଣୀ କାଲିଠୁ ଉପାସ ଅଛନ୍ତି ସାର୍ । ସ୍କୁଲରେ ପ୍ରଥମ ହେଉଥିବା ପିଲାଟି କହୁଥିଲା- ଗୁରୁଜୀ, ଏଯାଏଁ ତ ଆମେ ବଜାରରୁ ବହି ପାଉନୁ, କାଗଜର ଦାମ ଏତେ ହେଲାଣି ଯେ ଆମେ ଖାତା କରିପାରୁନୁ, ଏ ମାଗଣା ଖାଇ ଲାଭ କଣ ? ପ୍ରଧାନ ଶିକ୍ଷକଙ୍କ ଆଖିରେ ଲୁହ ଜକେଇ ଆସୁଥିଲା । ସେ ବର୍ଷ ଗାଁରେ ଏହି କାର୍ଯ୍ୟକ୍ରମ ନେଇ ଦୁଇ ଦୁଇଟି ଉଲ୍ଲେଖନୀୟ ଘଟଣା ଘଟିଗଲା । ଗାଁ ମୁଣ୍ଡ ଉଇକାଳିପଟାସ୍ ଜଙ୍ଗଲରେ ଦୁଇ ରୋଷେଇଆଣୀ ଦିନେ ଗଣଧର୍ଷଣର ଶିକାର ହେଲେ । ଆଉ ଗ୍ରାମ୍ୟ କମିଟି ସଭ୍ୟ ହେବା ପାଇଁ ଗଣ୍ଡଗୋଳ କରି, ଗାଁର ଦୁଇଦଳ ସୃଷ୍ଟି ହୋଇ, ହାତବୋମା ଫୋପଡ଼ା ଫୋପଡ଼ି ହେଲେ ।

ଗାଁରେ ନହେଲେ ବି ମଦ୍‌ହୋସ୍‌ବାବୁଙ୍କ ଘରେ ରାମରାଜ୍ୟ ପ୍ରତିଷ୍ଠା ହେବା ସହ, ଆକାଶବାଣୀ-ଦୂରଦର୍ଶନ ଏହାର ସଫଳତା ଉପରେ ବାରମ୍ବାର ପ୍ରଚାର କରିଚାଲିଥିଲା । ନିର୍ବାଚନ ପାଖେଇ ଆସୁଥିଲା । ଇାଟ୍‌ସାହେବ୍, ସାହେବ୍ ଓ କରଦ ରଜା ଅପେକ୍ଷା କରିଥିଲେ ଭିଜିଲାନ୍‌ସ ଚଢ଼ାଉକୁ । ସାହେବ୍ ଅପେକ୍ଷା କରିଥିଲେ ହେରଫେର ଜନିତ

ଘଟଣାନେଇ ଆଗାମୀ କମିଶନକୁ । ନିରୀହ ପ୍ରଧାନ ଶିକ୍ଷକ ମଦ୍‌ହୋସ୍ ବାବୁଙ୍କ ସହ କମିଟି ସଭ୍ୟ ଗଣଧର୍ଷଣର ପ୍ରଥମ ଶୁଣାଣୀକୁ ଅପେକ୍ଷା କରିଥିଲେ । ରାମରାଜ୍ୟର ସ୍ରଷ୍ଟା ଦେଶରଚ୍ଚା, ଭୋଜନ ଯୋଜନାର ସଫଳ ଦାୟାଦ ଭାବେ ଦିଲ୍ଲୀ ଯାତ୍ରା କରିଥିଲେ । ସ୍ୱାଧୀନତାର ପଚାଶବର୍ଷ ପୂର୍ତ୍ତି ଉପଲକ୍ଷେ ସ୍ୱାଧୀନତାର ସ୍ମାରକୀ ସ୍ୱରୂପ, ଦିଲ୍ଲୀ ମହାରାଜ, ନୀଳକିଲ୍ଲାର ବୁଲେଟ୍‌ପ୍ରୁଫ୍ କାଚଘରେ, ପୋଲିସ ଛାଉଣୀ ଭିତରେ, ଶିଶୁ ବିକାଶ, ମହିଳା ବିକାଶ ଓ ଶିକ୍ଷା ବିକାଶର ସଫଳତା ଉପରେ ସାରଗର୍ଭକ ଭାଷଣ ଦେଇ ଚାଲିଥିଲେ ।






ପୁରୀର ଭାଙ୍ଗ, ସାଙ୍ଗ, ରଙ୍ଗ, ମଉଜ, ସଂଗୀତ, ପଙ୍ଗତରେ ସାଇଟୋକାଗୁଡ଼ାକ ନିତି ମସଗୁଲ୍ ହେବାର ଦେଖି, ବଡ଼ ପୋଖରୀ ଜାଗାର ନାରୁ'ନା କହିଲେ- "ବୁଝିଲ ମଣି ! , ରଙ୍ଗ ରହିଲେ ହେଲା । ମାକ୍ , ଏ ଗୁଡ଼ାକ କଣ କାମ ? ଖାଅ, ପିଅ, ବୁଲ ଚାଲ, ହେଲେ ଟିକେ ଧର୍ମକରରେ । ହେଇଟି ଆମେ ! ପିଲାଦିନୁ ଭେଣ୍ଡିଆ ଯାଏଁ ସକାଳୁ ପଳେ ଘଣା ସୋରିଷତେଲ ଦେହରେ ମାଖି, କୁସ୍ତି ମେହନତ୍ କରି, ବଡ଼ ଦେଉଳର ମେଘନାଦ ପାଚେରୀକୁ ଜଗି, ଦିଅଁଙ୍କୁ ରକ୍ଷା କରି, ଧର୍ମ ଅର୍ଜିଥିଲୁ । ବୟସ ବଢ଼ିଲାରୁ ଘରେ ମେଣ୍ଢା, ବଣି, ଗୋବରା ଚଢ଼େଇ ପୋଷି, ଧର୍ମ ଅର୍ଜିଲୁ । ଆଉ ତୁମେ..... । ଆରେ କିଛି ନ ହେଲା ବେଳକୁ ଷଣ୍ଢକୁ ଘାସ, ମାଙ୍କଡ଼କୁ କଦଳୀ, କୁଆକୁ ରୁଟି, ଚକୁଳିଆକୁ ବଟି ଦେଇ ଧର୍ମ କରରେ । ବଞ୍ଚିଯିବ, ବଞ୍ଚିଯିବ । ତୁମ ଦିହରେ ଆଉ ବାରହାତି ଖଣ୍ଡା ବାଜିବନି ।" ଗାଧୁଆ ତୁଠରେ ନାରୁନା'ଙ୍କ କଥା ପିଲାଙ୍କ ମନକୁ ପାଇଲା । ବନି କହିଲା- "ବୁଝିଲ ସୁଆରେ, ସୁଧ ପଇସାରୁ କିଛି କିଛି ଧର୍ମରେ ଲଗାଅ । ପିଲାଦିନେ ସିନେମା ଦେଖି, ପକେଟ୍‌ମାର୍ କରି, ଯାହା ପାପ କରିଛ, କିଛିତ ଧୋଇଯିବ । ନହେଲେ ତୁମ ଭଳି ଭଣ୍ଡ ସନ୍ୟାସୀ, ଆର ଜନ୍ମକୁ କୁକୁର ହେବ ହେ ।" ବନିର ଏ ଛାତିକଟା କଥା ଶୁଣି ସୁଆରେ କହିଲେ-"ହଇରେ, କିଏ ପାପ କରୁନି ଯେ, ମୁଁ କରୁଛି ବୋଲି କହୁଛୁ । ଆରେ କାହା ଜମିକୁ, କାହାକୁ ବିକେଇ ଦେଇ ଦି'ହଜାର କମାଇବା କଣ ପାପ ? ମଠ

ମନ୍ଦିର ସଂପରିକୁ ବଡ଼ଲୋକେ ଢାଲ୍ ରସିଦ୍‌ରେ ମାଡ଼ି ବସିଲେ ଧର୍ମ, ଆଉ ମୁଁ ଯଦି ଏତେ ପରିଶ୍ରମ କରି ଖଣ୍ଡେ ମାଡ଼ି ବସିଲି, ସେ ପାପ ? ହେଇ, ଅଜୟ ଗୋଲା, ନିବୁଜ ଘରେ ନିତି ପାପ କରି ସଂଜରେ ଦିଅଁଙ୍କ ଆଗେ ଭଜନ ବୋଲି ଧର୍ମ କରୁଛି । ଆମ ନଣ୍ଡୁ କୁମୁଟି, ଚମଡ଼ା ବ୍ୟବସାୟ କରି ଧର୍ମ କରୁଛି । ଆଉ ମୁଁ ସାନପାପ କଲିଯେ, ଏତେ କଥା !! ବୁଝିଲୁ, ମୋ ସାଂଗେ ରହ, ସ୍ୱର୍ଗଦ୍ୱାର ଦୋକାନଘରୁ ଖଣ୍ଡେ ନେ, ତେଣିକି ଧର୍ମ କର ।'' ସୁଆରଙ୍କ ଏ ମାନସ ଶୁଣି, କୁସୁନି କହିଲା- ''ବୁଝିଲ ବନି'ନା, ଆଉ ଡେରି ନୁହେଁ, ଜଗମୋହନ ଚାଲ ।'

ଜଗମୋହନରେ ତିନି ବଂଧୁ, କିଛି ଧର୍ମ କରିବାର ନିଷ୍ପତ୍ତି ନେବା ପରେ, ଭଦଭଦଳିଆ ସୁଆରେ କହିଲେ- ବୁଝିଲୁ କୁସୁନି, ଜୀବନରେ ଯଦି କିଛି ପରୋପକାର ନାହିଁ, ସେ ଜୀବନର ମୂଲ୍ୟ କାହିଁ ? ଧର୍ମବକ ସୁଆରଙ୍କ କଥା ଶୁଣି ଯାଦୁମନ୍ତ୍ରଳା କୁସୁନି କହିଲା- ଦେଶଟା ତ ସ୍ୱାଧୀନ ହୋଇଗଲା । ଯଦି ହୋଇନଥାନ୍ତା ନା; ତେବେ ଅନଶନ କରି ଦେଶଟାକୁ ପକ୍କା ସ୍ୱାଧୀନତା ଆଣିବାର ସୌଭାଗ୍ୟ ଆଣିଥାନ୍ତି । କୁସୁନିର କଥାଶୁଣି, ବନି କହିଲା- ବୁଝିଲୁ ଅନଶନ କରି, ସ୍ୱାଧୀନତା ଆଣି ଯାହା ତ ପାଇଛେ ଛାତ୍ । ବରଂ ଯଦି ଦେଶ ସ୍ୱାଧୀନ ହୋଇ ନଥାନ୍ତା, ତେବେ ଗୋରାମାନଙ୍କୁ ଗରିଲା ଆକ୍ରମଣ କରି, କମାଲ୍ ଦେଖାଇଥାନ୍ତି । ତେବେ ଯାହାହେଉ, ଏଣିକି ଦେଶପାଇଁ କିଛି କରି ଧର୍ମ କରିବା ପାଇଁ ଘରୁ ବାହାରିଲେ, ସୁଆରେ, ବନି'ନା ଓ କୁସୁନି ।

ଧର୍ମକାମ ଆରମ୍ଭରେ ଗୁଣ୍ଡିଚାମନ୍ଦିର ନିକଟ ଆଦ୍ୟ ନୃସିଂହଙ୍କୁ ମୁଣ୍ଡିଆମାରି, ସାଇକେଲରେ ସିଂହ ଦୁଆରକୁ ଫେରିବା ବାଟରେ, ଅବକାଶ ଗଳିରୁ, ରସିଦ୍‌ମିଆଁର ଗୋଡ଼ଛନ୍ଦା ଛେଳିଟା କୁଆଡୁ ଧାଏଁକିନା ରାସ୍ତାକୁ ଧପାସ୍ କରି ପଶିଆସିଲା । ସାଇକେଲ୍ ମାଡ଼ିଯିବା ପୂର୍ବରୁ ତଳକୁ ଖପ୍‌ଖାପ୍ କରି ଡେଇଁ ପଡ଼ିଲେ ଭଦଭଦଳିଆ ସୁଆରେ । ତାଙ୍କର ମାଙ୍କଡ଼ ଡିଆଁରେ ତଳେ ଭୁସ୍‌ଭାସ୍ ହୋଇ ପଡ଼ିଗଲେ ବନି'ନା ଓ କୁସୁନି । ହଠାତ୍ କେଉଁଠୁ ସ୍କୁଟରଟା ପଶି ଆସୁ ଆସୁ ସାଇକେଲ୍‌ଟାରେ ଧଡ଼ାସ୍ କରି ମାଡ଼ କରିଦେଲା । ରିମ୍‌ଟାଇଲ୍ ହେଲା, ଗହଳି ଜମିଲା । ଭିଡ଼ ଦେଖି, କିଏ ସ୍କୁଟର ଚଢ଼ା ବାବୁଟାକୁ ଧାମେ ଦେଲାତ, କିଏ ତା ଡେଣା ଭିଡ଼ି ଭାଷାଅଭାଷାରେ ତା'ଚଉଦ ପୁରୁଷ ଉଝାଳିଲା । କିଏ କହିଲା, କାଢ଼ ଟଂକା । ବିଚରା ବାବୁ ସାଇକେଲ୍ ତିଆରି କରାଇଲେ, ହାତଧରି କ୍ଷମା ମାଗିଲେ । ତିନିହେଁ ଯାଉ ଯାଉ, ଡାକ୍ତରଖାନା ଛକ ପାଖେ ଜୁଟିଗଲେ ସାହିତ୍ୟାନୁରାଗୀ ସଂଜିବନୀ ସୁଧା ବୁଦ୍ଧବାବୁ । କଥା ପ୍ରସଙ୍ଗରେ କହିଲେ- ''ବୁଝିଲ ବନି, କିଯୁଗ ଭଏ ! ହାଣମୁହଁକୁ ଯାଉଥିବା ଛେଳିଟାକୁ ରକ୍ଷା କରୁ କରୁ, ଶଃ.... ସ୍କୁଟରବାଲାଟା, ସେ ମହାନ୍ ପୁରୁଷର ସାଇକେଲ୍‌କୁ ପୁରା କଣ୍ଡମ୍ କରିଦେଲା ହେଃ.... । ତିନିଟା ଯାକ ଲୋକ ଖଣ୍ଡିଆ ।'' ଆଗକୁ ଯାଉ ଯାଉ ମାର୍କେଟ୍ ପାଖେ ଶିଳ୍ପୋଦ୍ୟୋଗୀ ବୁଟୁବାବୁ କହିଲେ- ''ବୁଝିଲ ସୁଆରେ, ଏ

ସାଇକେଲ୍ ଚଢ଼ା ଛାଡ଼ । ହଉଓ, ସାଇକେଲ୍‌ରେ ଗଲେ ବି ଧକ୍କା । ଛେଳିକୁ ରକ୍ଷାକଲା ନ୍ୟାୟରୁ ସ୍କୁଟରବାଲାଟା, ତିନି ତିନିଟା ଲୋକଙ୍କୁ କି ଅବସ୍ଥା ନକଲା ! ଏବେ ଗୋଟେ ଡାକ୍ତରଖାନାରେ'' । ମରିଚିକୋଟ ଛକ ଡେଇଁ ଡେଇଁ ଛତାଦୋକାନୀ ଶିବ କହିଲା- ''ବୁଝିଲ କୁସୁନି, ଏଣିକି ଯୁଗ ଶେଷ । ଓଃ କି ଅବସ୍ଥା ସେ ଲୋକଟାର ! ମୁଣ୍ଡ ଦହି ଚହଲି ଯାଇଛି । କାନରୁ ବ୍ଲିଡ଼ିଂ କମୁନି....., ଏଣେ ଆଉ ଦି'ଟା ବି ସାଂଘାତିକ୍ ।'' ସିଂହ ଦୁଆର ପାଖେ ପହଞ୍ଚିଲା ବେଳକୁ ଭାଗି'ନା ଦଫେ ଲୋକଙ୍କୁ ଗଦେଇ କହୁଥିଲା- ''ଆହାଃ କି ସୁନ୍ଦର ଟୋକା ! କି ମହାନ୍ ଆତ୍ମା ତା'ର !! ଛେଳିଟାକୁ ରକ୍ଷା କରିବାକୁ ଯାଇ, ଶେଷରେ ନିଜର ପ୍ରାଣ ଦେଇଦେଲା ! ମଲାବେଳକୁ କହୁଥିଲା- ସେ ଛେଳିନୁହେଁ, ସେ ମାଆ ଛେମଣ୍ଡା ଦେବୀ । ମୋ ମା'ଙ୍କୁ ରକ୍ଷା କର ।' ଛେଳିକୁ ରକ୍ଷା କରିବାକୁ ଯାଇ ଶହୀଦ୍ ହୋଇଗଲେ ସୁଆରେ ।

ଭଦଭଦଳିଆ ସୁଆରେ, ବଞ୍ଚିଥାଇ ଶହୀଦ୍ ହେବାପରେ, ମହାସାଗରୀୟ ଶହୀଦ୍ ସ୍ରୋତରେ ବନି'ନା ଓ କୁସୁନି, ଅଠରନଳା ଡେଇଁ ଭାସି ଚାଲିଲେ । କୁସୁନି କହିଲା- ବୁଝିଲ ବନି'ନା, ମୋ ଆଖି ଦେଖାରେ ଯିଏ ଅଠରନଳା ଡେଇଁ ଯାଇଛି; ସେ ପୁରା ନାଁ କରିଛି । ହେଇ ଦେଖୁନ, ପ୍ରଫୁଲ୍ଲ'ନା; ଦେବଦତ୍ତ'ନା, କେଲୁ'ନା, ସମସ୍ତେ ଅଠରନଳା ଡେଇଁ ଆମ ଟାଉନ୍ ନାଁ ରଖିଛନ୍ତି ନା ! କଥା ହୋଇ ଯିବାକୁ, ଟାଇଁ ଟାଇଁ ଖରା । ହଠାତ୍ ହରେକୃଷ୍ଣପୁର ଗାଁ ମୁଣ୍ଡେ ସୁନ୍ଦରିଆ କଷରା ବଳଦଟାକୁ ଦେଖି, ଓହ୍ଲେଇ ପଡ଼ିଲେ ଦିହେଁ । ହଠାତ୍ କିଏ ଯେପରି କହିଲା- ହେ ଭାଇମାନେ, ଇଆଡ଼େ ଟିକେ ଆସ, ମୋତେ ମୁକ୍ତିକର । ଯାଦୁ ମନ୍ତଳା କୁସୁନି, ବଳଦର କଥା କହିବା ଶୁଣି ଚମକି ପଡ଼ିଲା । ବଳଦ କାନ୍ଦି କାନ୍ଦି କହିଲା ହେ ମନ୍ତଳା ଭାଇ, ତୁମେ ତ ଜାଣ ଏ ବର୍ଷ ଘୋର ମରୁଡ଼ି । ମୋତେ ଏ ବନ୍ଧନରୁ ଶୀଘ୍ର ମୁକ୍ତି କର । ମୁଁ ଏଣିକି ଯୁଆଡ଼େ ଯିବି, ସିଆଡ଼େ ବର୍ଷା ହେବ । ହେଲେ, ଏକଥା କାହାକୁ କହିବନିଟି, କହିଲେ ଛାତି ଫାଟିଯିବ । କୁସୁନି ଭାବିଲା, ଯଦି ମୁଁ ଏ ବଳଦକୁ ମୁକ୍ତ କରେ, ତେବେ ଦେଶରେ ବର୍ଷା ହେବ, ଶୁଖିଲା ଭୂଇଁରେ ଧାନ ଫଳିବ । ତା'ଠାରୁ ଆଉ ମହାନ୍ କାମ କଣ ଅଛି ? ବଳଦ ଖୋଲିଲା କୁସୁନି । ଘରକୁ ଫେରିଲା ବନି'ନା । ହଠାତ୍ ପାହାନ୍ତାପହରେ ବର୍ଷାହେଲା । ସ୍ତ୍ରୀ ଧନବତୀ କହିଲେ, ବୁଝିଲ, ବୋଧହୁଏ କେଉଁ ସାଧୁ ମହାତ୍ମା ତପସ୍ୟା କରି ଏ ବର୍ଷା କରାଇଛନ୍ତି । ସ୍ତ୍ରୀଙ୍କ କଥାରେ ହସିଲେ ମନ୍ତଳାବାବୁ । ଗର୍ବର ସହ ହସିହସି କହିଲେ ବୁଝିଲ ଧନବତୀ, ସେ ସାଧୁ ଆଉ କେହି ନୁହେଁ, ମୁଁ ନିଜେ । କଷରା ବଳଦ ମୁକ୍ତି ନକରେ, ନା ବର୍ଷା ନହୁଏ । କଥା ନ ସରୁଣୁ, ହଠାତ୍ ଘଡ଼ଘଡ଼ି ସହ ବିଜୁଳୀ ମାରିଲା । ବଳଦ ଦେଇଥିବା କଥା ଭାଙ୍ଗିବା ନ୍ୟାୟରେ ଚେତାଶୂନ୍ୟ ହୋଇ ଡାକ୍ତରଖାନା ଗଲା କୁସୁନି । ଦେଶକୁ ଅକାଳ ମରୁଡ଼ିରୁ ରକ୍ଷା କରିବାକୁ ଯାଇ ଯାଦୁମନ୍ତଳା କୁସୁନିର ଶହୀଦ୍ ହେବା ଖବର ସଂଗେ ସଂଗେ ଚାରିଆଡ଼େ ପ୍ରଚାରିତ ହେଲା ।

ବନ୍ଧୁଥାଇ, ଦୁଇବଂଧୁଙ୍କୁ ଶହୀଦ ହେବା ଦେଖି, ଏକାକୀ ବନି'ନା, ରବୀନ୍ଦ୍ରନାଥଙ୍କ "ଏକଲା ଚଲୋ" ଗୀତ ଗାଇ, ଘରୁ ଗୋଡ଼ କାଢ଼ିଲା । ହଠାତ୍ ତା ଆଖି ଆଗଟାରେ ଦଦରା ଡ଼ିଆସିଛି ଖୋଳମାର୍କା ଟାଉନ୍‌ବସ୍‌ଟା, ଧାଇଁ କିନା ଗୋଟେ ଛୋଟ ପିଲାକୁ ମାଡ଼ି ଗଲା । ସେକେଣ୍ଡରେ ସବୁ ସାଫ୍, ହେଲା ଲୋକଗହଳି । ଦେଖୁ ଦେଖୁ ପୁଲିସ ଗାଡ଼ି ପହଞ୍ଚିଗଲା । ପୁଲିସ କହିଲା- ହଟିଯାଅ, ନ ହେଲେ ଗୁଳି ଚାଲିବ । ଏସବୁ କାଣ୍ଡ କାରଖାନା ଦେଖି ଘଡ଼ିଏ ରହିଗଲା ବନି'ନା । ଛାତିକୁ ପଥର କରି, ମୁହଁକୁ ଇସ୍ପାତ କରି, ଭଙ୍ଗା କ୍ୟାବିନ୍‌ର ଦଦରା ବେଞ୍ଚ ଉପରେ ଠିଆ ହୋଇ କହିଲା- ହେ ବଂଧୁଗଣ ! ଏବେ ପ୍ରଶାସନ, ମଣିଷ ମାରି ଜନସଂଖ୍ୟା ହ୍ରାସ କରିବାକୁ ଅନେକ ଯୋଜନା କରୁଛନ୍ତି । ଟ୍ରେନ୍ ଧକ୍କା, ବସଧକ୍କା, ଘରପୋଡ଼ି, ଇତ୍ୟାଦିରେ ମରୁଥିବା ମଣିଷର ପରିବାରକୁ ଲକ୍ଷ ଲକ୍ଷ ଟଙ୍କା ଦେଇ, ପ୍ରଶାସନ, ମଣିଷକୁ ମରିବାକୁ ପ୍ରୋତ୍ସାହନ ଦେଉଛନ୍ତି । ହେଲେ ଆଜି ଏ ବନିକୁ, ଏ ଅର୍ଥଲୋଭ ବଳାଇ ଯିବନି । ଆଜି ମରିଥିବା ଏ ଶିଶୁଟି ପାଇଁ, ମୁଁ ଶହୀଦ୍ ହେବି । ହେ ମୋର ଶୃଙ୍ଖଳିତ, ଉଦ୍‌ବେଳିତ, ସଦାଇାଞ୍ଚିତ ପୁଲିସ ଭାଇ, ମୋର ବିନମ୍ର ନିବେଦନ, ମୋତେ ଶୀଘ୍ର ଗୁଳିମାର । ମୁଁ ବେକାର । ମୋ ଉପରେ ବାପା-ମା ଅଶାନ୍ତି, ଖଟି ଦୋକାନରେ ପାନବିକି ନଶୁଝି ପାରିବାରୁ ଦୋକାନୀ ଅଶାନ୍ତି, ସମାଜ ଅଶାନ୍ତି, ମୋ ନୀରବତାରେ ଦେଶ ଅଶାନ୍ତି । ତେବେ ଏ ଶିଶୁଟି ପାଇଁ ଶହୀଦ୍ ହେଲେ, ମୁଁ ଉଦ୍ଧାର ପାଇଯିବି, ଦେଶ ଧନ୍ୟହୋଇ ଯିବ । ବନି'ନାର କଥା ନ ସରୁଣୁ, ସାଏଁ କରି କେଉଁଠୁ ଗୁଳିଟାଏ ଆସି ଛାତି ବିନ୍ଧ କଲା । ଗାନ୍ଧୀଙ୍କ ଭଳି ଶରଧାବାଲିର ସଂକ୍ରାମକ ରୋଗ ମାଟିରେ ଟଳିପଡ଼ିଲେ ବନି'ନା । "ଶହୀଦ୍ ବନି'ନା କି ଜୟ" ଧ୍ୱନୀ ଗଗନପବନ ମୁଖରିତ କଲା ।

ରାତି ପାହି ପାହି ଆସୁଥିଲା । ଅଗଷ୍ଟ ପନ୍ଦର ପବିତ୍ର ଦିବସର ସକାଳେ, ସିଂହଦ୍ୱାରର ଗୋପବନ୍ଧୁ ମୂର୍ତ୍ତିକୁ ଲାଗି, ଛେଳିମାତା ରକ୍ଷାକାରୀ ଶହୀଦ ଭଦଭଦଳିଆ ସୁଆରେ, ବର୍ଷା କରାଇ ଶହୀଦ୍ ହୋଇଥିବା ଯାଦୁମଛଳା କୁସୁନି ଓ ଶିଶୁପ୍ରାଣ ପାଇଁ ଶହୀଦ୍ ହୋଇଥିବା ବନି'ନାଙ୍କର ତିନୋଟି ବ୍ରୋଞ୍ଜ ପ୍ରତିମୂର୍ତ୍ତି ମୁଖ୍ୟମନ୍ତ୍ରୀଙ୍କ ପ୍ରଦତ୍ତ ଅର୍ଥରେ ଉନ୍ମୋଚନ ହେବାର ଆୟୋଜନ ଚାଲିଥିଲା । ଲୋକେ ଦେଖୁଥିଲେ, କେବଳ ପୁରୀ କାହିଁକି, ସମଗ୍ର ଉତ୍କଳ, ଏପରି କି ଭାରତବର୍ଷରେ ଲକ୍ଷ ଲକ୍ଷ ଜନସାଧାରଣ ତିନି ଶହୀଦ୍‌ଙ୍କ ଉଦ୍ଦେଶ୍ୟରେ ଲୁହ ଢାଳୁଛନ୍ତି ।

ନିଦ ଭାଙ୍ଗିଗଲା ତିନିଙ୍କର । ସିଂହଦୁଆର ଏମାରମଠ ଚକଡ଼ାଉପରେ ଅଳସ ଭାଙ୍ଗୁ ଭାଙ୍ଗୁ ଶହୀଦ୍ ସ୍ୱପ୍ନ କାହାଣୀରେ ହସି ହସି ଗଡ଼ିଯାଉଥିଲେ ତିନିହେଁ । ରଘୁ'ନାଙ୍କ ଦୋକାନରେ ପାହାନ୍ତା ଚା' ମାରୁ ମାରୁ ନନୁ'ନା କହୁଥିଲେ- ବୁଝିଲୁ ବାଇ, ମାକ୍ ଭାଙ୍ଗଟା ହେଲାନି । ସବୁଆଡ଼େ ଶୁଭୁଥିଲା "ଆସ ଶହୀଦ୍ ହେବା" ର ଅନ୍ତରଂଗ ପ୍ରତିଧ୍ୱନୀ ।





ତାଙ୍କ ବାହାଘରର ଠିକ୍ ପରେ, ବିବାହ ଋତୁ ଭଳି ସପ୍ତମ ଋତୁ, ଏ ପୃଥିବୀରେ ଆରମ୍ଭ ହେଲା । ତାଙ୍କ ବେଳେ ଏମିତି ନଥିଲା, ଯାହା ଏବେ ହେଉଛି । ଆଗେ ଥିଲା ବିବାହ ବ୍ରତରେ ବନ୍ଧୁବାନ୍ଧବ, କୁଟୁମ୍ବ ଲୋକେ, ସାଇ-ପଡ଼ିଶା, ମାଙ୍ଗଳିକ କାର୍ଯ୍ୟରେ ଯୋଗ ଦେଇ ଉପବୀତଧାରୀ ବ୍ରାହ୍ମଣଟିଏ ବା ଅଗ୍ନିକୁ ସାକ୍ଷୀ ରଖି ବିବାହ କରିଥିବା ବର-କନ୍ୟାଙ୍କୁ ଆଶୀର୍ବାଦ କରିବାକୁ ଯାଉଥିଲେ । ବ୍ରାହ୍ମଣର ମନ୍ତ୍ରପାଠ, ମାଈପିଙ୍କ ହୁଳହୁଳି ଭିତରେ, ଅଗ୍ନିକୁ ଘିଅ ଦାନ ଥିଲା ସେହିଭଳି ପବିତ୍ର ଦିନର ମହାନ୍ ଗଣ୍ଠିବନ୍ଧ । ଆଉ ଏବେ ସେକାଳ ପଖାଳ ନାହିଁ ଯେ ପିଆଜ ଲଗାଇ ବେଳେ ଭାତ ଖାଇଦେବ । ଏବେକାର ସାଉଦିଆ ଟାଉନର ପଖାଳକୁ, ତିନି ପ୍ରକାର ଚକ୍ଷଣା ଦରକାର । ବାହାଘର-ବ୍ରତଘରର ଏବେକାର ପରିବେଶ ଅଭୂତପୂର୍ବ ଅର୍ଥାତ୍ ଖାଅ କି ନଖାଅ ମୁଚୁକୁନ୍ଦିଆ ହସଟେ ହସି ଫୁଲତୋଡ଼ା ବଢ଼ାଅ, ଟଙ୍କା ଭର୍ତ୍ତି ଚିତ୍ରିତ ଖାମ୍‌କୁ ଦିଅ । ବିବାହ ଋତୁର ବେଳୋ-ବିଆଳିଆ ବ୍ୟବସାୟର ଲାଭ ଦେଖି, ଦେଖୁ ଦେଖୁ ଘୋ' ଘୋ' କରି ପଶିଗଲେଣି, ପୁଅ କିଣିଆ, କାନଫୋଡ଼ିଆ, ନାକଫୋଡ଼ିଆ, ଜନ୍ମ ବିକିଆ ଏପରିକି ଏକୋଇଶିଆର ଆୟୋଜକ ମଣିଷ ଗୁଡ଼ାକ । ଲକ୍ଷ୍ମୀଙ୍କୁ କିଏ ବା ଭଲ ନ ପାଏ ? ଶାସ୍ତ୍ରରେ ଅଛି- "ବାଣିଜ୍ୟେ ବସତି ଲକ୍ଷ୍ମୀ" । ତେବେ ଏ ବିବାହ ଋତୁର ଲାଭଜନକ ବ୍ୟବସାୟ, ଆଜିକାଲି ଉପାହ

ଉଦ୍ଧାପନା, ଆଦି ଭ'କାର ଶବ୍ଦରେ ସୀମିତ ନୁହେଁ ଜାଣି, ଅଫିସ୍‌ର ବଡ଼ବାବୁ, ତାଙ୍କ ଝିଅର ଚଉଦତମ ଜନ୍ମଦିନ ମଧ୍ୟ ଧୂମ-ଧାମରେ କଲେ । ତାଙ୍କ ଦେଖାଦେଖି, ପିଅନ ନରିଆ ତା' ଷଷ୍ଠନମ୍ବରିଆ ପୁଅର ଏକୋଇଶିଆରେ ବି ସାମିଆନା ଟାଣିଲା, ମାଛ ମାଂସ କଲା, ମାଇକ୍ ବଜାଇଲା ।

ତେବେ ଚାକିରୀ କଲା ଦିନୁ, ଆଦିବାସୀ ଅଞ୍ଚଳରେ ରହିଆସିଥିବା ଉଦ୍ଧବବାବୁ, ସହରକୁ ଆସି, ଏ ସବୁ ଦେଖି ତଟସ୍ଥ ହେଲେ । ତାଙ୍କ ଭାଷାରେ- ଆଶୀର୍ବାଦ ନେବାକୁ ଯଦି ବର-କନ୍ୟା ପ୍ରସ୍ତୁତ ନୁହଁନ୍ତି, ତେବେ ଆଶୀର୍ବାଦ କରିବାକୁ କିଏ ଯିବ ବା କାହିଁକି ? ତାଙ୍କ ଇଚ୍ଛା ଟେଣ୍ଟହାଉସ୍, ଅଖାଦ୍ୟ, ମାଇକ୍, ଭିଡ଼ିଓ, କ୍ୟାମେରା ଇତ୍ୟାଦି ପାଇଁ ବେପାରରେ ହଜାର ହଜାର ଟଙ୍କା ଖର୍ଚ୍ଚ ନ କରି, କେଉଁ ମନ୍ଦିରରେ ପୁଅର ବ୍ରତ, ଏପରିକି କୋର୍ଟରେ କନ୍ୟାଦାନ କରିଦେବା ବୁଦ୍ଧିମାନର ପରିଚୟ । ବିବାହ ଋତୁର ଏଭଳି ଦେଖାଇହେବା ପ୍ରହସନକୁ ଭଲପାଉନଥିବା ଉଦ୍ଧବବାବୁ, ଉଦ୍ଦେଶ୍ୟମୂଳକ ଭାବେ ଏସବୁ କାର୍ଯ୍ୟରେ ଯୋଗ ଦେଉନଥିବାବେଳେ, ପଡ଼ିଶାଘରର ପଡ଼ୋଶୀ, ଏପରିକି ସଦ୍ୟ ବିବାହିତ ଟୁକୁର ଘନ ଘନ ନିମନ୍ତ୍ରଣ ତାଙ୍କ ଦୃଢ଼ ମନକୁ ଦୋହଲାଇ ଦେଲା । ଭୋଜି ଦିନ ପତ୍ନୀ ଅହଲ୍ୟାଙ୍କ ସହ ହୋଟେଲରେ ପହଞ୍ଚି, ସେଠାକାର ପରିବେଶ ଦେଖି, ଝାଳେଇଗଲେ ଉଦ୍ଧବବାବୁ । କ୍ୟାସେଟ୍‌ର ମନ୍ତ୍ରପାଠରେ- ଚତୁର୍ଥୀହୋମ, ନିଆଁଝାସରୁ ରକ୍ଷାପାଇବାକୁ ଇଲେକ୍ଟ୍ରିକ୍‌ର ଧୂମହୀନ ଚୁଲା, ଏପରିକି ହୁଳହୁଳିଟିଏ ନାହିଁ । ପଡ଼ୋଶୀ ଭଦ୍ରଲୋକ, ଭଦ୍ରମହିଳା, ଏପରିକି ଗତକାଲି ଘନଘନ ନିମନ୍ତ୍ରଣ କରିଥିବା ଟୁକୁ ମଧ୍ୟ ସେମାନଙ୍କୁ ଚିହ୍ନୁ ନାହାଁନ୍ତି । ଶ୍ୱଶୁରଘର ପ୍ରଦତ୍ତ ଟାଏ-ସୁଟ୍-ଯୋତା ପିନ୍ଧି, ଟୁକୁ ଦୁଆରମୁହଁରେ ଫୁଲତୋଡ଼ା ଗ୍ରହଣ କରିଚାଲିଛି ଠିକ୍ ଚଳଚ୍ଚିତ୍ର ଭଳି । ବୋହୂର ପତ୍ତା ନାହିଁ । ଏସବୁ ଅବସ୍ଥା ଦେଖି ଘଡ଼ିଏ ଥକା ମାରିଲେ ଦିହେଁ । ସ୍ତ୍ରୀଙ୍କ ଇଚ୍ଛା, ଦୁଆରୁ ଫେରିଯିବାକୁ । ସ୍ୱାମୀଙ୍କ ଇଚ୍ଛା, ଏମିତି ଫେରିବା ଅଭଦ୍ରାମୀ ହେବ । ମୁହଁ ଖୋଲିଲେ ଉଦ୍ଧବବାବୁ- ବୁଝିଲ ଅହଲ୍ୟା, ଦଣ୍ଡେ ଠିଆ ହୁଅ, ମୁଁ କିଛି ବ୍ୟବସ୍ଥା କରେ । ସ୍ତ୍ରୀଙ୍କୁ ଠିଆ କରାଇ, ରିକ୍ସାଟିଏ ଧରି ଚାଲିଲେ ବଡ଼ଦାଣ୍ଡକୁ । ରଣା ଦୋକାନରୁ ଫୁଲତୋଡ଼ା, 'ଆନନ୍ଦ' ଦୋକାନରୁ ଚିତ୍ରିତ ଖାମ୍ କିଣି, ତନ୍ମଧ୍ୟରେ ଏକାବନଟି ଟଙ୍କା ପୂରାଇ, ନାଲି ସ୍କେଚରେ ଲେଖିଦେଲେ, ''ପ୍ରବଳ ଆଶୀର୍ବାଦ ସହ - ଉଦ୍ଧବ ମଉସା ଓ ଅହଲ୍ୟା ମାଉସୀ ।'' ରିକ୍ସାରୁ ନ ଓହ୍ଲାଉଣୁ, ହାତରେ ଫୁଲତୋଡ଼ା ଦେଖି କିଛିକ୍ଷଣ ପୂର୍ବରୁ ଅଚିହ୍ନା ବାରୁଥିବା ଟୁକୁ ଚିହ୍ନିପାରି ଡାକ ଛାଡ଼ିଲା- ହେଃ.... ରାକେଶ, ମଉସା ମାଉସୀଙ୍କୁ ଉପରକୁ ନେଇଯା' । ଜିନ୍ ପିନ୍ଧା, ଝିଅମାର୍କା ବାଳ ରଖିଥିବା ପାଢ଼ା ଟୋକାଟେ, ଫୁଲତୋଡ଼ା ଧରି ନେଇ ଡାକ ଛାଡ଼ିଲା- ହେଃ ରୁବୀ, ମଉସା ମାଉସୀଙ୍କୁ ଟିକେ ଭାବୀଙ୍କ ପାଖକୁ ନେଇଯାଅ । ଆସିଗଲେ ରୁବି, ଅବିବାହିତା

ଝିଅ, ବିବାହିତ ଝିଅର ବେଶରେ । ଓଠରେ ଓଠେ ଲିପଷ୍ଟିକ୍, ଆଖି ଭ୍ରୁରେ କଜଳର ଏକ ପ୍ରକାର ପ୍ରଲେପ, ଚାର୍ଲିନ୍‌ସେଣ୍ଟ ଓ ଇମାମି ପାଉଡରର ଗନ୍ଧାଘର । ଉପରଘର ସିଡ଼ି ଚଢୁ ଚଢୁ ଉପରେ ପଡ଼ିଲା ଭିଡ଼ିଓ କ୍ୟାମେରାର ଲାଇଟ୍ । ଘର ଭିତରେ ମୁଣ୍ଡରେ ଓଢ଼ଣା ନଥିବା ବୋହୂଟି ବହୁଦିନରୁ ଦେଖିନଥିବା, ତା'ର ସଦା ବାଞ୍ଛିତ, ପରମ ହିତୈଷୀଙ୍କୁ ଦେଖି ସତେ ଯେମିତି ପ୍ରାଣ ପାଇଲା । ସଶ୍ରଦ୍ଧ ପ୍ରଣାମ ସହ ଖାମ ନେଇ ନେଇ ଯେମିତି ସେ କହୁଥିଲା- ''ଡାକ ଛାଡ଼ିଲେ, ଆପଣତ ଦୌଡ଼ି ଆସିବେ, ଥାନାକୁ ଫୋନ୍ କରିବେ'' । ବୋହୂର ଦୁଇ ପାର୍ଶ୍ୱରେ ଅନ୍ୟ ଏକ ଏକ ବୋହୂ ବେଶରେ ସଜ୍ଜିତ ଝିଅଙ୍କ ମଧ୍ୟରୁ ଜଣେ ପଚାରିଲା- ସାର୍, ପ୍ଲିଜ୍ ଖରାପ ଭାବିବେନି ଆପଣଙ୍କ ନାଁ ଟା ? ଉଦ୍ଧବବାବୁ, ଖାତାରେ ଲେଖିଥିବା ଝିଅଟିକୁ କହିଲେ- ମୁଁ ଉଦ୍ଧବ ମଉସା, ଆଉ ଯେ ମୋ ସ୍ତ୍ରୀ ଅହଲ୍ୟାଦେବୀ । ଏଇ ସମୟରେ ଖଚ୍ କରି ଫଟୋ ବି ଉଠିଗଲା । ସରିଗଲା ବୋହୂ ଦେଖାପର୍ବ । ଅବଶ୍ୟ ତଳକୁ ଫେରିବାବେଳେକୁ ରାକେଶ ବା ରୁବି ନାମ୍ନୀ ପିଲାଙ୍କର ଆଉ ସେ ଆଗ୍ରହ କି ସହଯୋଗ ନଥିଲା । ଏଣେ ତଳେ ଚାଲିଲା ଖାଦ୍ୟ ପାଇଁ ଏକରକମ ପ୍ରତିଯୋଗିତା । ଭଦ୍ରଲୋକ ଓ ପାଟପିନ୍ଧା ମହିଳାମାନେ ଠେଲାଠେଲି, ପେଲାପେଲି କରି ସତେ ଯେମିତି ଭିକାରୀଙ୍କ ଅନ୍ନଛତ୍ରକୁ ଧସେଇ ପଶୁଥିଲେ । ଟେବୁଲରୁ ଅଇଁଠା ପୋଛା ନ ହେଉଣୁ, ପଡ଼ିଗଲା ପତର, ଲାଗିଲା ପୋଡ଼ାତେଲର ମାଛ, ଡାଲଡ଼ା ଘିଅର ଭାତ । ଗନ୍ଧରେ ନାକ ଫାଟି ଯାଉଥିଲେ ହେଁ, ଅଖାଦ୍ୟ ନ ଖାଇ ଉଠିଆସିବାକୁ ଇଚ୍ଛା ହେଉଥିଲେ ହେଁ, ଉପସ୍ଥିତ ଭିଡ଼ିଓ କ୍ୟାମେରା ତାହା କରିବାକୁ ଦେଇନଥିଲା । ଘରକୁ ଫେରି ଥକା ମାରିଲେ ଦିହେଁ । ଅହଲ୍ୟା କହିଲେ- ବୁଝିଲ, ଆମ ମନୋଜ ଠିକ୍ କହୁଥିଲା । ଏ ଖାମ୍, ତୋଡ଼ା ପାଇଁ କେତେଥର ବେକାର ପିଲାଗୁଡ଼ାକ ବାପା-ମାଙ୍କୁ ଟଙ୍କା ମାଗିବେ ? ଏଣିକି କୁଆଡ଼େ ସାଙ୍ଗସାଥି ବାହାଘରକୁ ସେମାନେ ଲୁଚୁଛନ୍ତି । ଉଦ୍ଧବବାବୁ କହିଲେ- ହଇଓ ଖାଇଲେ କୋଡ଼ିଏ ଟଙ୍କାର, ଅଥଚ ଦେଲେ ଦୁଇଶହ ଟଙ୍କା । ଅହଲ୍ୟା ଚମକି ପଡ଼ି କହିଲେ- କ'ଣ ତୁମେ ଦୁଇଶହ ଦେଲ ? ଉଦ୍ଧବବାବୁ କହିଲେ- ଆଉ ନୁହେଁ କ'ଣ ? ଫୁଲତୋଡ଼ା, ରିକ୍ସାଭଡ଼ା, ଖାମ୍, ଏକାବନଟଙ୍କା ସହ ଚପଲ ଚୋରୀର ଚିନ୍ତା, ଖାଇଥିବା ଅଖାଦ୍ୟକୁ ହଜମ କରିବାପାଇଁ ଥମସ୍‌ଅପ୍ ବା ଆଣ୍ଟାସିଡ୍‌ର ଖର୍ଚ୍ଚ ମିଶି କଣ ଦୁଇଶ' ହେବନି !!

ବାହାଘରିଆ ବେପାର ଦେଖି ଦିନେ ସେମାନେ ସ୍ଥିର କଲେ, କେତେଦିନ ଆମେ କେବଳ ଦେଉଥିବା ? ଦିନେ ସେମାନେ ସ୍ଥିରକଲେ, ନିଜେ ଏମିତି କିଛି ଦେବା-ଦିଆଇବା ବ୍ୟବସାୟ ଆରମ୍ଭ କରିବାକୁ । ଅହଲ୍ୟା କହିଲେ- ଆମ ପିଲେ ତ ସାନ, ନା ଏବେ ବ୍ରତ କରିହେବ, ନା ବାହାଘର ଯୋଡ଼ି ହେବ । କଣ କରିବା କହୁନ ? ମୁରୁକା ହସଟେ ହସିଲେ ଉଦ୍ଧବ ବାବୁ । ହସି ହସି କହିଲେ- ବୁଝିଲ ଅହଲ୍ୟା, ବୁଦ୍ଧିଥିଲେ ସବୁ ହୁଏ । ଆମେ

ବାହାଘର ମାର୍କା ଘରପ୍ରତିଷ୍ଠାଟେ କଲେ କିପରି ହୁଅନ୍ତା !! ସେଦିନ ସ୍ୱାମୀଙ୍କର ଯୋଜନା ଶୁଣି, ହସି ହସି କାନ୍ଦି ପକାଇଲେ ଅହଲ୍ୟା । ପରଦିନ ଯୋଜନା ମୁତାବକ, ସର୍ବୋଦୟ ନଗରଠାରେ ଅଫିସ ଋଣରେ ଅର୍ଦ୍ଧନିର୍ମିତ ଗୃହକୁ ଦେଖିବାକୁ ଗଲେ ସ୍ୱାମୀ-ସ୍ତ୍ରୀ । ରାତାରାତି ନିମନ୍ତ୍ରଣ ପତ୍ର ଛପାଗଲା-

ଓଁ ନମଃ ବିଶ୍ୱକର୍ମାୟେ ନମଃ

ମହାଶୟ,

ଜାଣି ଖୁସି ହେବେ ଯେ, ଘୋର ଅଭାବ ଭିତରେ ରହି, ଅଫିସ ଋଣ, ବଂଧୁ ଋଣ, କୁଟୁମ୍ବ ଋଣ, ଏପରିକି ହାତଉଧାରୀ ଋଣ କରି, ପିଲାଙ୍କ ମୁଣ୍ଡ ଗୁଂଜିବା ପାଇଁ ସର୍ବୋଦୟ ନଗରଠାରେ ଘରଟିଏ ଆରମ୍ଭ କରିଛି, ଯାହା ଏଯାବତ୍ ଅସଂପୂର୍ଣ୍ଣ ରହିଛି ।

ଆପଣ ତ ଜାଣନ୍ତି, କୋଣାର୍କ ମନ୍ଦିରର ମୁଣ୍ଡିମାରି ଧର୍ମପଦ ଇତିହାସରେ ଅମର ହୋଇଗଲା । ମୋ ଇଚ୍ଛା, ଆପଣମାନେ ମୋର ଏ ଅସଂପୂର୍ଣ୍ଣ ଘରେ ପାଦ ଦେଇ ମୋର ଘରକୁ ସଂପୂର୍ଣ୍ଣ କରିବାରେ ସହାୟକ ହୋଇ, ଜଣେ ଜଣେ ଧର୍ମପଦ ଭାବେ, ଇତିହାସରେ ନିଜ ନାମକୁ ସୁବର୍ଣ୍ଣ ଅକ୍ଷରରେ ଲେଖିଯିବେ ।

॥ କୃତଜ୍ଞତା ଓ ସମ୍ମାନ'ର ସହ ॥
ଆପଣଙ୍କର ମନ୍ତ୍ରମୁଗ୍ଧ, ଅପେକ୍ଷାରତ
ଶ୍ରୀମତୀ ଓ ଶ୍ରୀ ଉଦ୍ଧବ ଚନ୍ଦ୍ର

ଘର ପ୍ରତିଷ୍ଠା ଦିନ, ବିବାହ- ବ୍ରତ ଭଳି, ଉଦ୍ଧବବାବୁଙ୍କ ଘରକୁ ଟେଣ୍ଟହାଉସ୍ ବାଲା ଆସିଲା, ଭିଡ଼ିଓ କ୍ୟାମେରା ଆସିଲା, ଫଟୋବାଲା ଆସିଲା । ମହାପ୍ରସାଦ ବି ଆସିଲା । ଅତିଥିମାନେ ଦେଖୁଥିଲେ, ଶ୍ରୀମତୀ ଅହଲ୍ୟାଦେବୀ, ତାଙ୍କ ଶଳା ମୁନା, ପୁଅ ଓ ଝିଅ, ଚାରିହେଁ ଏକ ଧଳା ଲୁଗାର ଚତୁଃପାର୍ଶ୍ୱକୁ ଭିଡ଼ିଧରି ଦୁଆର ମୁହଁରେ ହସହସ ମୁହଁରେ ଠିଆ ହୋଇଛନ୍ତି । ଅତିଥିମାନଙ୍କୁ ଦେଖି, ଉଦ୍ଧବବାବୁଙ୍କ ପେଟ ଯେପରି ପୂରି ଯାଉଥିଲା । ଅତିଥିଙ୍କ ପଦସ୍ପର୍ଶରେ ତାଙ୍କ ଛାତି ଗର୍ବରେ ଫାଟି ପଡୁଥିଲା, ଠିକ୍ ରାଜା ଲାଙ୍ଗୁଡ଼ା ନରସିଂହ ଦେବଙ୍କ ଭଳି । ସେ ଦେଖୁଥିଲେ, ତାଙ୍କ ଅସଂପୂର୍ଣ୍ଣ କୋଣାର୍କ, ସତେ ଯେପରି ଅତିଥି ଧର୍ମପଦମାନଙ୍କ ମିଳିତ ଚେଷ୍ଟାରେ ସଂପୂର୍ଣ୍ଣ ହୋଇଯାଉଛି ।

ତେବେ ଏୟା ସତ ଥିଲା ଯେ, ବାହାଘରମାର୍କା ଘର ପ୍ରତିଷ୍ଠା ଉସବର ସଂଗୃହୀତ ଅର୍ଥରେ ଉଦ୍ଧବବାବୁ, ଘରର ଛାତ ପକାଇ ସାରି, କାଠପାଇଁ କିଛି ଅର୍ଥ ବଳାଇ ପାରିଥିଲେ ।






ଅଭାବ ସମୁଦ୍ରରେ ଅଳକୂଳ ନପାଇ ବାରମ୍ବାର ବୋଢକୁ ଢୋକ ଲୁଣ ପାଣି ପିଇଦେଲେ ମକରଧ୍ୱଜବାବୁ । ତଥାପି ଜୀବ ଛାଡୁନି, କି ତିମି ଖାଉନି । ଏଣେ, ଜୀବନକୁ ଖୁବ୍ ଲୋଭ । ଜୀବ ଛାଡ଼ିଗଲେ, ଏ ସୁଖ-ସଂସାରକୁ କିଏ ଭୋଗିବ ? ତେଣେ, ତିମି ଖାଇଲେ ଜୀବ ଛାଡ଼ିଲେ ଯାଏଁ, ଯନ୍ତ୍ରଣା କିଏ ସହିବ ? କିରାଣୀ ଜୀବନର ଶ୍ରେଷ୍ଠ ସଂପଦ ଭଙ୍ଗା ସାଇକେଲଟାକୁ ଘରକୁ ପଶଉ ପଶଉ ପ୍ରାଣପ୍ରିୟା ପତ୍ନୀଙ୍କ ସୋହାଗ ଡାକରେ ଅଳ ପାଇଗଲେ ସେ । ଶେଯରେ ଦେହଟାକୁ ଗଡ଼ଉ ଗଡ଼ଉ ପ୍ରାଣପ୍ରିୟା ପତ୍ନୀ କହିଲେ- ହଇଓ, ଶୁଣୁଚ ନା ନାଇଁମ । ଗାଁ ରୁ ଦାଦା-ଖୁଡ଼ୀ ଆସିଛନ୍ତି, କନି ଆସିଛି । ପତ୍ନୀଙ୍କ କଥା ନ ସରୁଣୁ, ଖୁଡ଼ୀ କହିଲେ- ବୁଝିଲୁ ସରିତା, ଗାଁଟା ଯାକରେ ମକରଙ୍କ ଭଳି ଜୋଇଁ କାହିଁ ! ସବୁ ତୋ ଭାଗ୍ୟ । କେତେବେଳେ ମୁହଁ ଶୁଖିଛି, ନାଁ କେବେ ଅଭାବ ଅଛି ? ଗାଁକୁ ଗଲେ,

ମାଛ ଧରାରେ ଥିବେ, ତାସ୍ ଖେଳରେ ଥିବେ, ଭୋଜିଭାତରେ ବି ଥିବେ । ସଭିଏଁ ଧନ ଦେବେ, ହେଲେ ଏ ମନ କାହିଁ ? ହେଇ ତୋ ଦାଦା, କନି ଶାଶୁଘର ଲୋକେ, ପୁରୀ ଶ୍ରୀମନ୍ଦିରରେ ଝିଅ ଦେଖା କଥା କହିଲାରୁ, ଚମକିଗଲେ । ମୁଁ କହିଲି, କିଓ, ପୁରୀରେ ପରା ମକର-ସର ଅଛନ୍ତି । ଆମର ପୁଣି ଭୟ କଣ ? ରାତିରେ ଶୋଇଲା ଶେଯରେ ପତ୍ନୀଙ୍କୁ ଡାକିଲେ ମକରଧ୍ୱଜ ବାବୁ । ବୁଝିଲ, କଥାରେ ଅଛି ମାଇପିଙ୍କ କଥାରେ ଚାଲିଲେ ଘର ଭାଙ୍ଗେ । କି ଆବଶ୍ୟକ ଥିଲା କ୍ୟାପିଟାଲ ଛାଡ଼ି, ପୁରୀ ସହରକୁ ଆସିବାକୁ । ସବୁ ଜ୍ୟୋତିଷ ନାନ୍ଦୀକ ଜଣେ ଜଣେ ଡକାଯତ୍ । କ'ଣ ନା, ପୁରୀରେ ଜାଗା କିଣ, ଲକ୍ଷ୍ମୀ ଆସିବେ, ଭାଗ୍ୟ ବଦଳିଯିବ । ଭଲରେ ବଞ୍ଚିବା ପାଇଁ ଯେତେ ବ୍ୟବସାୟ କଲି, ସବୁ ଫେଲ୍ । ପିଅରଲେସ୍ କଲି ବେକରେ ଗାମୁଛା ପଡ଼ିଲା । ଲଟେରୀ ଖେଳିଲି, ତୁମ ଗହଣା ଗଲା । ହଇଓ କିରାଣୀ ପଇସା ଶାଗ-ପଖାଳକୁ ନିଅଣ୍ଟ, ତେଣିକି ନିତି ତୁମର ବଂଧୁ, କୁଟୁମ୍ବ ଚର୍ଚ୍ଚା । ନାଇଁ ଯଦି ଆସିଲ, ଖାଅ, ପିଅ, ଯାଅ, । ତା ଭିତରେ ଡାଇଲଗ୍- ''ସରିତା-ମକର ଭଲ, ବଡ଼ମନ, ଏଠି ରାତିଟା ନରହିଲେ ସେମାନେ ମନଦୁଃଖ କରିବେନି'' ? ହଉ, ଏ ଆଗ୍ରହ ଦେଖା ଏଣିକି କମାଅ । ନହେଲେ ଆଉ ମାସେ କି ଦିମାସେ ପରେ ଘର ବିକି ବଡ଼ଦାଣ୍ଡକୁ ଗଲେ ସବୁ ଜାଣିବ । ଅଫିସି ଅବସ୍ଥା ସାଂଘାତିକ । ଶଃ.... ପୁରୁଣା ଚେୟାରମ୍ୟାନଟା ଏମିତି କାମ କଲା ଯେ, କର୍ପୋରେସନ କୋଡ଼ିଏ ବର୍ଷ ତଳକୁ ଚାଲିଗଲା । ଏବେ ମନ୍ତ୍ରୀ କହିଲେଣି, କ୍ଷତିରେ ଚାଲୁଥିବା ନିଗମକୁ ଭଙ୍ଗାଯିବ, କର୍ମଚାରୀ ଛଟେଇ ହେବେ । ଛଟେଇ ହୋଇ ଘରେ ବସିଲେ, କେମିତି ଏ ସଂସାର ଚାଲିବ, ଟିକେ ଭାବ । ସ୍ୱାମୀଙ୍କର ଏକଦମ୍‌କିଆ ସଟଲବ୍ରେନିଆ କଥା ଶୁଣି, ହସିଲେ ସରିତା ଦେବୀ । ହସି ହସି କହିଲେ- ସବୁ ଠିକ୍ ଚାଲିବ । ତୁମେ ଟିକେ ଖାଲି ତୁମ ମୁଣ୍ଡକୁ ଆଉଥରେ ଘଷ, ମାଜ, ପରିଷାର କର । ଦେଖିବ, ସେଇ ମୁଣ୍ଡରୁ ନୂଆ ନୂଆ ତଥ୍ୟ, କମ୍ପୁଟର ଭଳି ବାହାରି ଆସିବ । ଚାକିରୀ ଗଲେବି, ତୁମ ପାଖେ ପରା ଶହ ଶହ କିରାଣୀ ଚାକିରୀ କରିବେ, ତେଲ ମାରିବେ । ହଇଓ, ମୋର ପରା ସାତସାତଟା ପ୍ରସ୍ତାବ ପଡ଼ିଥିଲା, ଡାକ୍ତର ବରକୁ ଛି' କରିଦେଇ ତୁମ ହାତ ଧରିଲି । ନାହାକ ସାତଟା ଜାତକରୁ, ଛଅଟା ଫିଙ୍ଗି ଦେଲା । ବାପାଙ୍କୁ କହିଥିଲା- ''ଏ ମକରଧ୍ୱଜଙ୍କୁ ଆଖିମୁଜି ଜୋଇଁ କରି ଦିଅନ୍ତୁ ଆଜ୍ଞା । ଏ ପିଲା ବୁଦ୍ଧିରେ ପୃଥିବୀ ଜିତିଯିବ, ଏ ଏକ ପ୍ରକାର ନେପୋଲିୟନ ।'' ଆଉ ତୁମେ କହୁଛ କ'ଣନା, କଣ କରିବା ? ହେଇଟି ମୋ ଧନଟା ପରା, ଶାନ୍ତିରେ ଶୋଇଯାଅ, ନୀରବରେ ଭାବ, ଅଚିନ୍ତା ସ୍ୱପ୍ନ ଦେଖ ।

ନୀରବରେ ଶୋଇଗଲେ ବାବୁ । ମନେ ପଡ଼ିଲା ତାଙ୍କର ଅତୀତ କଥା । ପିଲାଦିନେ ବୋଉ କହୁଥିଲା- ସାତଝିଅ ପରେ ଯେତେବେଳେ ଗର୍ଭ ରହିଲା, ସାଇପଡ଼ିଶା କହିଲେ, ଅଷ୍ଟମଗର୍ଭରେ ପୁଅ ହେବ, କୃଷ୍ଣ ଜନ୍ମ ହେବେ । ନାହାକ କହିଲା- ଏ ଗର୍ଭରେ ପୁଅ, କିନ୍ତୁ.... । ବୋଉ ଚମକି ପଡ଼ିଲା, ତା ଆଖିରୁ ଲୁହ ଗଡ଼ିଗଲା । ହସିଲେ ନାହାକେ । କହିଲେ- "ବ୍ୟସ୍ତ ହୁଅନି ମା । ପୁଅର କିଛି ଅସୁବିଧା ହେବନି । ହେଲେ ତୁମ ଭାଗ୍ୟରେ, ସେ ଆସିବ । ରାତ୍ରର ପ୍ରଥମ ପ୍ରହରେ ଜନ୍ମ ହେଲେ ଚୋର ହେବ, ଦ୍ୱିତୀୟ ପ୍ରହରରେ ହେଲେ ଡ଼କାୟତ ହେବ, ତୃତୀୟ ପ୍ରହରରେ ହେଲେ ମନ୍ତ୍ରୀ ହେବ, ଆଉ ଚତୁର୍ଥ ପ୍ରହରରେ ହେଲେ ରାଜା ହେବ ।" ଚାହିଁ ଚାହିଁ ଦିନେ, ଖରାବେଳଟାରେ ବୋଉର ଗର୍ଭଯନ୍ତ୍ରଣା ଆସିଲା । ଘର ଠାକୁରାଣୀ, ଗାଁ ଠାକୁରାଣୀଙ୍କ ପାଖେ ବାପା ଯାଇ ଦୀପ ବସାଇଲେ । ଶହ ଶହ ମାଇପିଙ୍କୁ ଗର୍ଭଯନ୍ତ୍ରଣାରୁ ଉଦ୍ଧାର କରିଥିବା ସୂରୁଯନାନୀ ପହଞ୍ଚି, କହିଲା- ଏଇ ପ୍ରଥମ ପ୍ରହରରେ ପିଲାଟା ହେଇଯିବ ନା' ଜଣ ? ବୋଉର କାନ୍ଦ ଯେ କହିଲେ ନସରେ । ଆରମ୍ଭ ହେଲା ଯଚାଯଚି । ହେ ଶ୍ୟାମାକାଳୀ, ହେ ସିଦ୍ଧମହାବୀର, ମୋ ପୁଅକୁ ଚୋର କରନି । ଚାହିଁ ଚାହିଁ ଦ୍ୱିତୀୟ ପ୍ରହର ଆସିଲା । ବୋଉର ଯନ୍ତ୍ରଣା ସହିହେବନି କି କହିହେବନି । ସୂରୁଯନାନୀ ପାଣି ଗରମ କଲା, ପୁରୁଣା ଲୁଗା ଯୋଗାଡ଼ିଲା । ବୋଉ ତା' ଯନ୍ତ୍ରଣା ଭିତରେ ଡାକିଲା- ହେ ମା' ଭଗବତୀ, ହେ ମା' ବିମଳା, ହେ ମା' ତାରେଣୀ, ହେ ବାବା ଆଖଣ୍ଡଳମଣି, ମୋତେ ପଛେ ନେଇଯାଅ, ମୋତେ ପଛେ ମଲା ପୁଅ ଦିଅ, ହେଲେ ମୋ ପୁଅକୁ ଚୋର-ଡକେଇତ କରନି । ଭାଗ୍ୟକୁ ଦ୍ୱିତୀୟ ପ୍ରହର ଗଲା । ତୃତୀୟ ପ୍ରହରର ଯନ୍ତ୍ରଣା ଦେଖି, କବାଟ ଆଉଜେଇଲା ସୂରୁଯନାନୀ । ବୋଉ କିନ୍ତୁ ଦ୍ରୌପଦୀଙ୍କ ଭଳି ହାତଟେକିଦେଇ, କହିଲା- ହେ ନାରାୟଣ ! ମୋତେ ଆହୁରି କଷ୍ଟ ଦିଅ, ହେଲେ ମୋ ପୁଅକୁ ରାଜା କର । ଏ ଦେଶରେ ଧର୍ମର ପ୍ରତିଷ୍ଠା ହେଉ, ସତ୍ୟର ପ୍ରତିଷ୍ଠା ହେଉ । ତେବେ ତୃତୀୟ ପ୍ରହରର ପ୍ରସ୍ଥାନ ଓ ଚତୁର୍ଥ ପ୍ରହରର ପ୍ରବେଶ କାଳର ସନ୍ଧିସ୍ଥ ମୁହୂର୍ତ୍ତରେ ପୁଅ ଜନ୍ମହେଲା । ବୁଢ଼ା ବୁଢ଼ୀଏ କହିଲେ- ପିଲାଟା ରାଜାହେବ, ଗୋ-ବ୍ରାହ୍ମଣଙ୍କୁ ରକ୍ଷା କରିବ, ଧର୍ମ ରକ୍ଷା କରିବ, ଦେଶରକ୍ଷା କରିବ । ଟୋକାଏ କହିଲେ-ପିଲାଟା ମନ୍ତ୍ରୀହେବ, ଆମ ଗାଁକୁ ସୁନା କରିବ, ବେକାରୀ ହଟିବ, ଗରିବି ହଟିବ । ଅଥଚ ସବୁ ସତ୍ୟକୁ ଅସତ୍ୟ କରି ସେ ହେଲା ନିଷେସିତ କିରାଣୀ । ତେବେ ରାତ୍ରୀର ଏ ଭାବନା ମୁଖ୍ୟତଃ ଥିଲା, ଚାକିରୀ ଚାଲିଯିବାର ପରବର୍ତ୍ତି ଅବସ୍ଥା ପାଇଁ । ଚାକିରୀ ଯିବା ପରର ଅବସ୍ଥା ସଂପର୍କରେ ଭାବୁ ଭାବୁ, ଏକ ନୂତନ ଚେତନା ତାଙ୍କ ହୃଦୟରେ ପ୍ରବେଶ କଲା । ସେ ଚିନ୍ତା କଲେ ଏ

ଦେଶ, ଧର୍ମ, ଜାତି ଓ ସମାଜର ରକ୍ଷା ପାଇଁ ତାଙ୍କୁ କିଛି ନା କିଛି କରିବାକୁ ହେବ । ଏଥିପାଇଁ ଅଜସ୍ର ଅର୍ଥ ଦରକାର । ମନ୍ତ୍ରୀ ହେବାର ସ୍ୱପ୍ନ ତାଙ୍କ ମନରୁ ଉଭେଇ ଯାଇଥିଲା । ଖାଦଡ୍ ପିନ୍ଧି, ଗାନ୍ଧୀଟୋପି ପିନ୍ଧି, ସରପଞ୍ଚରୁ ବ୍ଲକ ଅଧ୍ୟକ୍ଷ, ପରେ ସେଠୁ ବିଧାୟକରୁ ମନ୍ତ୍ରୀ ହେଲା ବେଳକୁ ସେ ବୁଢ଼ା ହୋଇ ଯାଇଥିବେ । ଏବେକାର ମନ୍ତ୍ରୀମାନଙ୍କର ଯାହାତ ଅବସ୍ଥା । କିଏ ହାୱଲାରେ ଗିରଫ୍, ତ କିଏ ଚିନି ଦୁର୍ନୀତିରେ ଗିରଫ୍, କିଏ ଘର ଆବଣ୍ଟନ ଗିରଫ୍ ତ, କିଏ ଟେଲିଫୋନ୍ କଳା ବଜାରୀରେ । କିଏ କାଠଅଡ଼ାରେତ, କିଏ ଜେଲ ଭିତରେ । ତାଙ୍କଡ଼ା, ସ୍ତ୍ରୀ, ପିଲା, ଶଳା, ଭାଇ ଯାହା ନାମରେ ଯାହା ଟଙ୍କା ଥିଲା, ସବୁ ବ୍ୟାଙ୍କ ଆକାଉଣ୍ଟ ଜବତ । ଖୁବ୍ ଭଲ ହୋଇଛି ସେ ମନ୍ତ୍ରୀ ହୋଇ ନାହାଁନ୍ତି । ତେବେ ଏ ଦେଶର ମଙ୍ଗଳ ପାଇଁ ତାଙ୍କୁ, ତାଙ୍କ - ପରିବାରକୁ ତ ଅନେକ କିଛି ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ ।

ସକାଳୁ ନିଦ ଭାଙ୍ଗିଲା । ପ୍ରାଣପ୍ରିୟା ପତ୍ନୀକୁ ଉଠାଇ କହିଲେ- ବୁଝିଲ, ମୋ ଜନ୍ମ ବୃତ୍ତାନ୍ତରୁ ଏକ ନୂଆ ଯୋଜନା ମନକୁ ଆସିଛି । ମୋର ଇଚ୍ଛା, ଆମେ ଭିକାରୀ ହୋଇ ଯାଆନ୍ତେ ! ଠୋ' ଠୋ' କରି ହସୁ ହସୁ କାନ୍ଦି ପକାଇଲେ ସରିତା ଦେବୀ । କାନ୍ଦି କାନ୍ଦି କହିଲେ- ହଇଓ, ଶେଷକୁ ଆମକୁ ବଡ଼ଦାଣରେ ଠିଆ କରାଇବା ତୁମ ଇଚ୍ଛା ଥିଲା ? ମୋ ପିଲେ ଶେଷକୁ ଭିକ ମାଗିବେ ? ହସିଲେ ମକରଧ୍ୱଜ ବାବୁ । ହସୁ ହସୁ କହିଲେ- ବୁଝିଲ ସର, ତୁମର ବୁଦ୍ଧି ବୋଲି ଟିକିଏ ନାହିଁ । ଭିକାରୀ-ଟୀକିରୀ, ଏବେ ଖୁବ୍ ଭଲ ଚାକିରୀ । ତାଙ୍କୁ ବସ୍, ଟ୍ରେନରେ ଟିକଟ ଲାଗେନି । ତାଙ୍କୁ ସବୁଆଡ଼େ ଛାଡ଼ । କଥାରେ ଅଛି- ଭିକାରୀ ଦିନେ ସମ୍ରାଟ ହୁଏ । ଭିକାରୀ ହୃଦୟର ଦୟା, କ୍ଷମା, ସ୍ନେହ, ଭକ୍ତି, ରାଜାଙ୍କ ପାଖରେ ଥାଏ । ଆଜିକାଲି ଭିକାରୀମାନେ କେବଳ ଧନୀ । କିନ୍ତୁ, ଆମେ ଭିକାରୀ ହେଲେ, କୋଟିପତି ହେବା, ରାଜା ହେବା, ଦେଖିବ ଭାଗ୍ୟ ବଦଳିଯିବ । ହେଇ ଦେଖୁନ, ମନ୍ତ୍ରୀ ହୋଇ, କି ନିନ୍ଦା, ଅପବାଦ, ଜେଲ, ଚୋରିମାନା ! ଶେଷକୁ ଶଳା, ସ୍ତ୍ରୀ, ପୁଅ ଝିଅ, ଭାଇ ସମସ୍ତଙ୍କ ବ୍ୟାଙ୍କ୍ ଆକାଉଣ୍ଟ ଜବତ । ଏବେ ଆଜିକାଲିକା ମନ୍ତ୍ରୀ, ମହାଚିନ୍ତାରେ । କାହାନାମରେ କୋଟି କୋଟି କଳାଟଙ୍କା ରଖିବେ ? ଏବେ ଚାଲ ଆମ ନାମରେ ଆକାଉଣ୍ଟ ଖୋଲିଦେବା । ମୁଁ ଶୁଣିଛି ମନ୍ତ୍ରୀଙ୍କ ଲୋକ, କଳାଟଙ୍କାକୁ ସୁରକ୍ଷିତ ରଖିବା ପାଇଁ ଭିକାରୀମାନଙ୍କୁ ଖୋଜୁଛନ୍ତି । "ହଜିଲା ବଳଦ ଖୋଜିଲାଠି" ନ୍ୟାୟରେ ସେମାନେ ଆମପାଖକୁ ନିଶ୍ଚୟ ଆସିବେ, ଆମ ଆକାଉଣ୍ଟ ନମ୍ବର ଟିପିନେବେ, ଆମଠୁ

ଦସ୍ତଖତ କରାଇନେବେ । ଆମ ନାଁରେ ରହିବ କୋଟି କୋଟି ଟଙ୍କା । ତୁମେ କେତେ ଖାଇବ, କେତେ ପିଇବ, କେତେ ପିନ୍ଧିବ ??? ବୁଦ୍ଧିମାନ ସ୍ୱାମୀଙ୍କ ଚମତ୍କାରିଆ ଯୋଜନା ଶୁଣି କୁରୁଳି ଉଠିଲେ ସରିତା ଦେବୀ । ପରଦିନ ଭିକ୍ଷାବୃତ୍ତିକୁ ଜନ୍ମଗତ ଅଧିକାର ଭାବରେ ସ୍ୱୀକୃତି ଦେବାକୁ ରାଜ୍ୟ ସରକାରଙ୍କଠାରେ ଦାବି ଜଣାଇବାପାଇଁ ଗଢ଼ାହେଲା- "ସର୍ବଦଳୀୟ ଭିକାରୀ ୟୁନିୟନ" । ମକରଧ୍ୱଜବାବୁ ଓରଫ୍ ମକରାବାଇଆ ହେଲେ ୟୁନିୟନର ନବ ନିର୍ବାଚିତ ସଭାପତି । ସେଥିରେ ପଥ ଭିକାରୀ, ବସ୍‌ଭିକାରୀ, ଟ୍ରେନ ଭିକାରୀ, ଚୁଲା ଭିକାରୀ, ହାଟ ଭିକାରୀ ପ୍ରଭୃତିଙ୍କୁ ସାମିଲ କରାଗଲା । ୟୁନିୟନର ବାଇଲ ପ୍ରସ୍ତୁତି ହେଲା । କଡ଼ାନିୟମ ରଖାଗଲା, ୟୁନିୟନର ଅନୁମୋଦନ ବିନା କେହି ଭିକ୍ଷାବୃତ୍ତି କରିପାରିବେ ନାହିଁ । ୟୁନିୟନର ସଭାପତିଙ୍କ ପାଖେ ପ୍ରତି ଭିକାରୀଙ୍କ ପାସ୍‌ବୁକ୍ ରହିବ । ବାଇଲର ଲକ୍ଷ୍ୟ ସ୍ଥାନରେ ଲେଖାଗଲା- ଧର୍ମକୁ ଭୟ କରୁଥିବା ଓ ସମାଜକୁ ଦାନୀ ଭାବେ ଦେଖାଇ ହେବାକୁ ଚାହୁଁଥିବା ମଣିଷମାନଙ୍କୁ ମାନସିକ ଶାନ୍ତି ଦେବା ପାଇଁ, ଏ ୟୁନିୟନ ଗଠିତ । ଆବଶ୍ୟକ ସ୍ଥଳେ ଏ ଭିକାରୀଦଳ, ଦେଶରକ୍ଷାରେ ସୈନିକ ଭାବେ ମଧ୍ୟ ଯୋଗ ଦେବେ । ୟୁନିୟନର ଦାବିପତ୍ରରେ ଲେଖାଥିଲା-

(୧) ଭିକ୍ଷାବୃତ୍ତି ଆମ ଜନ୍ମଗତ ଅଧିକାର ।

(୨) ଭିକାରୀଙ୍କୁ ମୁଣ୍ଡ ଗୁଂଜିବାକୁ ବାସସ୍ଥାନ ଦିଅ ।

(୩) ଭିକାରୀଙ୍କ ପିଲାଙ୍କୁ ବିନା ମୂଲ୍ୟରେ ପାଠ୍ୟପୁସ୍ତକ ଓ ଭିକାରୀଙ୍କୁ ଲୁଗାପଟା ଯୋଗାଇ ଦିଅ ।

(୪) ଭିକାରୀଙ୍କୁ ଦୁର୍ନୀତି ବିଭାଗଠାରୁ ଦୂରରେ ରହିବାକୁ ଦିଅ ।

(୫) ନିର୍ବାଚନରେ ଭିକାରୀଙ୍କ ପାଇଁ ଶତକଡ଼ା ବାରଭାଗ ସ୍ଥାନ ସଂରକ୍ଷଣ କର ।

କିଛିଦିନ ପରେ ଲୋକେ ଦେଖୁଥିଲେ, ମକରଧ୍ୱଜବାବୁ ଓରଫ୍ ମକରା ବାଇଆ, କାନ୍ଧରେ ଏକ ହାରମୋନିୟମ ପକାଇ, ହାତରେ ଯୌତୁକ ହତ୍ୟାଜନିତ ମୃତବୋହୂ, ପୋଲିସକୁକୁର, ହାତକଡ଼ା ପଡ଼ିଥିବା ଶାଶୁ-ନଣନ୍ଦଙ୍କ ତୈଳଚିତ୍ର ଲଗା ବାଉଁଶକୁ ଧରି ଆଗେଇ ଚାଲିଛନ୍ତି । ପଛରେ ଢ଼ୋଲକ ଓ ଗୀତବହିକୁ ଧରି ସରିତା ଦେବୀ ଓରଫ୍ ଘରବାଯାଣୀ ଏବଂ ତାଙ୍କ ପିଲାମାନେ ଷ୍ଟେସନ ଆଡ଼କୁ ଏକମୁହାଁ ହୋଇ ମୁହାଁଇଛନ୍ତି ।

ବୋଉ ଗର୍ଭଯନ୍ତଣାର ତୃତୀୟ ପ୍ରହରର ଶେଷ ଭାଗରେ ଜନ୍ମହୋଇ ମକରଧ୍ୱଜବାବୁ, ଭିକାରୀଙ୍କ ପାଇଁ ନିର୍ବାଚନରେ ସଂରକ୍ଷଣ କୋଟାରୁ ମନ୍ତ୍ରୀହେବେ ନା ଚତୁର୍ଥପ୍ରହରର ପ୍ରାରମ୍ଭରେ ଜନ୍ମହୋଇ ଭିକାରୀରୁ ସମ୍ରାଟ ହେବେ, ତାହାହିଁ ଦେଖିବାକୁ ବାକିଥିଲା ।





ବିନି ଭାଉଜଙ୍କ ଭଳି ସୁନ୍ଦରୀ ଯେ ଖାଲି ଆମର ଏ କଳିଙ୍ଗ ବା ଉତ୍କଳଦେଶ କାହିଁକି, ପଶ୍ଚିମବଙ୍ଗ, ପୂର୍ବବଙ୍ଗ, ଆସାମ ମଣିପୁର, ମେଘାଳୟ, ନାଗାଲାଣ୍ଡ ଭଳି ରାଜ୍ୟରେ ଦୁର୍ଲଭ- ଏକଥା କେବଳ ମୁଁ ନୁହେଁ, ସାରା ଗାଁଟାଯାକର ଲୋକ ଚୁପ୍‌ଚାପ୍ ହେଉଥିଲେ । ଖୁବ୍ କମ୍ ବୟସରୁ ବ୍ରଜନନାଙ୍କ ହାତଧରି ଗାଁକୁ ନଈଁ ନଈଁ ବୋହୂ ହୋଇ ଆସିଥିବା ବେଳେ, ମୋ ବୟସ ସାତ କି ଆଠବର୍ଷ । ସେଦିନର କଥା ମୋର ଏବେବି ମନେ ଅଛି । ପାରନାନୀର କୁମ୍ଭପକା ଲୁଗା ପଛରେ ମୁହଁ ଲୁଚେଇ ବିନି ଭାଉଜଙ୍କୁ ମୁଁ ଦେଖିଥିଲି । ସୁନ୍ଦର ଅସୁନ୍ଦର ଜାଣିବାର ବୟସ ହୋଇନଥିଲେ ବି, ସେଦିନ ମୋ ଦେହ ଶିରଶିରେଇ ଉଠିଥିଲା । ଗୋବରଲିପା ଆଟୁଘରେ, ଖଜୁରୀ ପଟି ମସିଣା ଉପରେ ବିନିଭାଉଜ, ସହରାଞ୍ଚଳର ହାଲୋଜିନ୍ ଭଳି ଦାଉ ଦାଉ ହୋଇ ଜଳୁଥିଲେ । ତାଙ୍କର ଆଙ୍କିଲା ଆଙ୍କିଲା ଭୂରୁ, ବିନା ଲିପ୍‌ଷ୍ଟିକ୍‌ରେ ଗୋଲାପ ରଙ୍ଗିଆ ଓଠ, କୃଷ୍ଣଚୂଡ଼ିଆ ବେଣୀ ଓ ଚମ୍ପାଫୁଲିଆ ମୁହଁ, ସାରା ଗାଁଟାକୁ ମହକାଇ ଦେଉଥିଲା । କେହି କେହି ପରଦିନ କଥା ହେଉଥିଲେ- ସାକ୍ଷାତ କଳିକତି ଦୁର୍ଗା ମୁହଁଟାତ ! ଆଉ କିଏ ଟୋକା- ଟୋକଳିଆ ମୁହଁ ସଞ୍ଜରେ ହିଡ଼େ

ହିଡ଼େ କଥା ହୋଇ ଯାଉଥିଲେ- ବ୍ରଜନନା ଚାନସ୍‌ଟା ମାରିନେଲା । ବୁଢ଼ାବୁଢ଼ୀ କଥା ହେଉଥିଲେ- ଏତେ ସୁନ୍ଦର ଭଲ ନୁହେଁ । ଆଜିକାଲି ଯେଉଁ କାଳ ନା.......... !

କିନ୍ତୁ ଏଇଟା ସତ ଯେ ବିନି ଭାଉଜଙ୍କୁ ମୁଁ ବହୁବାର ଏକଦମ୍ ନିକଟରୁ ଦେଖିବାର ସୁଯୋଗ ପାଇଥିଲି । ପଡ଼ିଶା ଘରର ପୁଅ ଭାବେ ଦୋକାନରୁ ସଉଦା ଆଣିବା ପାଇଁ ବା କେତେବେଳେ ସ୍କୁଲ ବାରଣ୍ଡାରୁ ବ୍ରଜନନାଙ୍କୁ ତାସ୍‌ଖେଳରୁ ଡାକିବାର ଦାୟିତ୍ୱ ଭାଉଜ ମୋ ଉପରେ ଦେଉଥିଲେ । ବେଳେ ବେଳେ ମୋ ଗାଲକୁ ଚିପି ଦେଉ ଦେଉ କହୁଥିଲେ- ବୁଝିଲ ବାବୁଲି, ତୁମ ପାଇଁ ଆମଗାଁରୁ ଗୋଟେ ବଢ଼ିଆ ସୁନ୍ଦରୀ ବୋହୂ ଧରି ଆଣିବି । ଏତେ ନିକଟରେ ଥାଇବି କେଜାଣି କାହିଁକି ବିନି ଭାଉଜଙ୍କୁ ଦେଖିବା ପାଇଁ ମୁଁ ସମସ୍ତଙ୍କ ଅଲକ୍ଷ୍ୟରେ ଗହ୍ଲାପୋଖରୀ ତୁଠରେ ଲୁଚି ଲୁଚି ଚାହୁଁଥିଲି । ଗାଁରେ ଦୁଇବର୍ଷ ରହିବା ଭିତରେ, ଭାଉଜ ମୋ କଣ୍ଠରୁ "ଦେଲେ ଧରା କଥା ସରେ, ଥାଏ ମଜା ଦୂରେ ଦୂରେ" ଗୀତକୁ ବାରମ୍ବାର ଶୁଣୁଥିଲେ । କେବଳ ସେତିକି ନୁହେଁ, ବ୍ରଜନନାଙ୍କ ନିର୍ଦ୍ଦେଶିତ ଗୀତିନାଟ୍ୟ ଅଭିମନ୍ୟୁବଧରେ ମୋ ରୋଲ୍ ଦେଖିବାପାଇଁ ଭାଉଜ ଥରେ ସ୍କୁଲଘରକୁ ଓଢ଼ଣା ଟାଣି ଯାଇଥିଲେ ।

ସେଦିନରୁ ଆଜି ବୋଧହୁଏ ଗୋଟେ ଯୁଗ ଚାଲିଗଲାଣି । ବିଦ୍ୟାଳୟରୁ ମହାବିଦ୍ୟାଳୟ ଆସିବା ବାଟରେ କୁଆଡ଼େ ହଜିଗଲେଣି ବିନିଭାଉଜ । କୁଆଡ଼େ ହଜିଗଲାଣି ଗ୍ରାମ୍ୟଜୀବନ, ଖଜୁରୀ ଗଛର ଛାଇ, ଗହ୍ଲାପୋଖରୀ ଇତ୍ୟାଦି । ଯୁଗସହ ତାଳ ଦେଇ ସହରରୁ ଗ୍ରାମ ଯାଏଁ ମାଡ଼ିଗଲାଣି ପାଶ୍ଚାତ୍ୟ ଜଗତର ୱେଷ୍ଟର୍ଣ୍ଣ ମ୍ୟୁଜିକ୍, ରକ୍, ପପ୍, ର୍ୟାପ, ଓ ଦାଦ୍ ସଙ୍ଗୀତ । ଲୋକେ ଏଣିକି ପାଲା, ଦାସକାଠିଆ ବଦଳରେ ନିଇତି ଅନାଇ ବସୁଛନ୍ତି ଷ୍ଟାର୍, ଜୀ, ଜୈନ ଟି.ଭି.ର ପୋଲିଓ ବା ପକ୍ଷାଘାତ ଆକ୍ରାନ୍ତ ଗୋଡ଼ ହାତବଙ୍କା ବ୍ରେକ୍‌ଡ୍ୟାନ୍‌ସକୁ । ସାହିର ପୂର୍ଣ୍ଣସାହୁର ବରାପିଆଜି ଦୋକାନରେ ବା ଚକରା ମୁଢ଼ିବାଲା ପାଖେ ଆଉ ଲୋକଙ୍କ ଭିଡ଼ ଜମୁନି । ଭିଡ଼ ଜମୁଛି କଫିହାଉସ୍ ବା ଚାଇନିଜ୍ ଫାଷ୍ଟଫୁଡ୍ ଦୋକାନ ଆଗରେ । ଘରେ ଘରେ ଏବେ ଭାଗବତ, ପଦ୍ମପୁରାଣ ବଦଳରେ ପଶିଗଲାଣି ଷ୍ଟେସନ/ବସ୍‌ଷ୍ଟାଣ୍ଡରେ ସଦାବିକ୍ରୀ ପ୍ଲେବୟ୍, ଫାଣ୍ଟାସୀ ବହି । ଏକବିଂଶ ଶତାବ୍ଦୀର ଆଗମନରେ ତଥାକଥିତ ସମ୍ଭ୍ରାନ୍ତ ସମାଜର ବଡ଼ମୁଣ୍ଡିଆମାନେ, ଗାନ୍ଧୀବାଦୀ ବନ୍ଧୁମାନେ, ବିଦେଶରୁ ପ୍ରଚୁର ଅର୍ଥ ଧାରକରି ଭାରତବର୍ଷକୁ ଦୁଇ ଚାରିଟା ବର୍ଷରେ ନ୍ୟୁୟର୍କ କରିଦେବାର ସ୍ୱପ୍ନ ଦେଖାରେ ଲାଗିଗଲେଣି । କୁଆଡ଼େ ହଜିଗଲାଣି ଗାନ୍ଧୀ ଗୋପବନ୍ଧୁଙ୍କ ଫଟୋ, ଭାଷଣ । ଏସବୁ ଦେଖି, ଶୁଣି, ନିରୀଖେଇଲା ବେଳେ ମତେ କିଏ ଯେମିତି କହେ- ଉଠ, ଜାଗ୍ରତ ହୁଅ, ଦେଖ ଭାରତର ସଂସ୍କୃତି-ସଭ୍ୟତା

ମଧ୍ୟରେ କିପରି ଭାରତ ଅପସଂସ୍କୃତି ଅନୁପ୍ରବେଶ କରୁଛି ! ଦେଖ, ଶୂନ୍ୟରେ କିପରି ଗଣତନ୍ତ୍ର ସମାଜବାଦ, ନାରୀସ୍ୱାଧୀନତା ପ୍ରଭୃତି ଶବ୍ଦମାନ ଦୋଳାୟମାନ ହେଉଛନ୍ତି !! ଭାରତକୁ ପାଶ୍ଚାତ୍ୟ ସଂସ୍କୃତି କବଳରୁ ଉଦ୍ଧାର କରିବା ପାଇଁ, ବେଳେବେଳେ ମୋର ବିପ୍ଳବୀ ମନ ବିଦ୍ରୋହ କରିଉଠେ ।

ସତେ ଯେମିତି ଏ ବର୍ଷଟା ଥିଲା ଭାରତପାଇଁ ଏକ ଗର୍ବ ଓ ଗୌରବର ବର୍ଷ । ବିଜ୍ଞାନରେ, କାରିଗରୀ କୌଶଳରେ, ଆନ୍ତର୍ଜାତିକ ଅର୍ଥନୀତିରେ ଆମେ ପଛେଇ ଥିଲେ ବି ସୁନ୍ଦରୀ ପ୍ରତିଯୋଗିତାରେ, ଆମେ ସମସ୍ତ ପଛକୁ ପାଦରେ ଦଳି ଚକଟି ଆଗେଇ ଯାଉଥିଲେ । ଗାଁ ଗହଳିରେ ଠାକୁରାଣୀ ମାଡ଼ିବାପରି, ସାରା ଦେଶରେ ମାଡ଼ିଯାଇଥିଲା ମା' ସାହାଡ଼ା ସୁନ୍ଦରୀ ପ୍ରତିଯୋଗିତା । ସମୁଦ୍ରକୂଳରେ ହୋଟେଲ ପ୍ରକଳ୍ପର ସଂକଳ୍ପ ଓ ସାହିସାହି ବେଶ୍ୟାପଡ଼ା ଓ ଡ୍ରଗ୍‌ସ ବେପାରର ସମ୍ଭାବ୍ୟ ଯୋଜନା । ପାଶ୍ଚତ୍ୟକୁ ଅନୁକରଣ କରୁ କରୁ, ବିଉଟି କୁଇନ୍‌ମାନଙ୍କ ଦ୍ୱାରା ଭାରତ ଏକରକମ ଆକ୍ରାନ୍ତ ହୋଇ ଯାଉଥିଲା । ପିଅନ, ମାଳୀ, ଡ୍ରାଇଭରଠାରୁ ଡାକ୍ତର, ନେତା ସଭିଏଁ ସୁନ୍ଦରୀ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ହୋଇ ଯାଉଥିଲେ । ସହରମାନଙ୍କରେ ଆରମ୍ଭ ହୋଇ ଯାଇଥିଲା "ଫେଷ୍ଟ"ର ଅନୁଚିନ୍ତା । ବର୍ଷର ବିଭିନ୍ନ ସମୟରେ ସହରଟା ବସନ୍ତଫେଷ୍ଟ, ଶୀତଫେଷ୍ଟ, ଗୌରବଫେଷ୍ଟ, ଟପରଫେଷ୍ଟରେ ମୁଖରିତ ହୋଇ ଉଠୁଥିଲା । ମହାବିଦ୍ୟାଳୟର ପ୍ରତିଯୋଗିତା ପାଇଁ ଆୟୋଜିତ ଏହି ଫେଷ୍ଟର ଆୟୋଜନ କରୁଥିଲେ ହୋଟେଲ୍ ବାଲାଏ । ଯୁବକ-ଯୁବତୀଙ୍କ ଏ ମେଳର କର୍ମକର୍ତ୍ତା ହେଉଥିଲେ ସହରର ସବୁ ବୟୋବୃଦ୍ଧ/ବୃଦ୍ଧାମାନେ । ମୁଁ ଦେଖୁଥିଲି ଏବେ ସକାଳୁ ଲୋକେ ଫେଷ୍ଟ ପିଉଛନ୍ତି, ଖରାବେଳେ ଫେଷ୍ଟରେ ଲଞ୍ଚ୍ କରୁଛନ୍ତି ଓ ରାତିରେ ଫେଷ୍ଟ-ଡିନର୍ ଖାଉଛନ୍ତି । ଶୁଣାକଥା ଏସବୁ ଦେଖାଦେଖି କେବଳ ଏ ସହର ନୁହେଁ, ଓଡ଼ିଶାର ବିଭିନ୍ନ ନଗର ସହରରେ କୁଆଡ଼େ ଆସିଯାଉଥିଲା ଫେଷ୍ଟର ମତୁଆଲା ମୌସମ୍ । ଲୋକଙ୍କ ଧାରଣା ହେଉଥିଲା- ଏ ମୌସମ୍ ଦେହରେ ବାଜିଲେ, ଦେହ ରୋମାଞ୍ଚିତ ହେବ, ଉଲ୍ଲସି ଯିବ । ଯଦ୍ୱାରା ଆଉ ବାର ପ୍ରକାରର ରୋଗ, ମଣିଷ ଦେହରେ ପ୍ରବେଶ କରିବନି, ଅକାଳ ବାର୍ଦ୍ଧକ୍ୟ ଦେହଟାକୁ ମାଡ଼ିବସିବନି । ସବୁରି ଭିତରେ, ଅର୍ଥାତ୍ ମୁଁ ମୋ କଲେଜ ଜୀବନରେ ଭଲ ପାଇଥିବା ସୁନ୍ଦରୀ ଝିଅ ସୁନନ୍ଦା, ସୁଲତା, ପ୍ରଣତୀ, ସବିତା, ବିଜୟଲକ୍ଷ୍ମୀ, ଚାରୁଲତାଙ୍କ ମଧ୍ୟରେ କେବେବି ବିନିଭାଉଜଙ୍କ ପବିତ୍ର-ସ୍ନିଗ୍ଧ ରୂପଟିକୁ ଖୋଜି ପାଇପାରିନଥିଲି ।

ହଠାତ୍ ସେଦିନ ଆକସ୍ମିକ ଭାବେ ଦେଖାହେଲା ବ୍ରଜନନାଙ୍କ ସହ । ମୋତେ ଦେଖି ଖୁବ୍ ଖୁସି ହୋଇଗଲେ ବ୍ରଜନନା । ତାଙ୍କ ମୁହଁରେ ବୟସର ଛାପ ଆସିଯାଇଥିଲା । ହସ

ଭିତରେ କରୁଣତାର ଛାଇ, ମୋ ଆଖିକୁ ଏଡ଼ାଇ ପାରିନଥିଲା । ପମ୍ପ ମାରୁଥିଲେ ବ୍ରଜନନା । ଏଇ ଦି'ଚାରି ମାସ ତଳେ ଗାଁରୁ ବଦଳି ହୋଇ ଆସିଥିଲେ ସହରକୁ । ରହୁଥିଲେ ବରଗଡ଼ ବ୍ରିଟ୍‌ର ଏକ ଅବହେଳିତ ଇ.ବି. କ୍ୱାର୍ଟରରେ । ନିମନ୍ତ୍ରଣ କରିଥିଲେ ଘରକୁ । ବିନିଭାଉଜଙ୍କୁ ଦେଖିବାପାଇଁ, ଖୋଜି ଖୋଜି ପହଞ୍ଚିଥିଲି ବ୍ରଜନନାଙ୍କ ଘରେ । ଦୁଆରେ ଅଧାଭଙ୍ଗା ଖଟିଆଟାରେ ଝିଅମାନେ ପାଠ ପଢୁଥିଲେ । ତାଙ୍କ ଦେହର ବୋତାମଫିଟା ସାର୍ଟ, ବ୍ରଜନନାଙ୍କ ଦରିଦ୍ରବସ୍ଥାର ସୂଚନା ଦେଉଥିଲା । ମୁଁ ଖୋଜୁଥିଲି ବିନିଭାଉଜଙ୍କୁ । ଏକ ବଖୁରିଆ ଘରଟାରେ ବିଭିନ୍ନ ଡିଜାଇନ୍‌ର ଶାଢ଼ୀ, ପୋଷାକ, ନେକ୍‌ଲେସ୍, ପଏଣ୍ଟେଡ୍ ଚପଲକୁ ସଜାଇ ଚାଲିଥିଲେ ବିନିଭାଉଜ । ମୋତେ ଦେଖି ଖୁସି ହେଲେ ସେ । ପଚାରିଲେ- ''କଣ ଗୀତ ନାଚ ହେଉଛି ନା ନାହିଁ ? କେଉଁଠି ଗୋଡ଼ ଖସାଇଲଣିଟି ?? ବୁଝିଲ ବାବୁଲି, ତୁମ ନନାଙ୍କର ସବୁବେଳେ ସେଇ ମଫସଲିଆ କଥା । ତାଙ୍କୁ ବୁଝାଅ- ଯୁଗ କୁଆଡ଼େ ଗଲାଣି । କେତେଦିନ ଏ ଅଭାବରେ ଚଳିବା ? ଆଜିକାଲି ଯେଉଁ ମଡ଼େଲ୍ ପ୍ରତିଯୋଗିତା ହେଉଛି, ସେଥିରେ ଭାଗନେଲେ ଦୋଷ କଣ ?? ଏଠିତ ଶାଶୁଶ୍ୱଶୁର ନାହାଁନ୍ତି ଯେ ବାରଣ କରିବେ । ଯଦି ଭାଗ୍ୟରେ ଥାଏ, ଟଙ୍କା ମିଳିବ, ପ୍ଲେନ୍ ଟିକେଟ୍ ମିଳିବ, ମହାବଳିପୁରମ୍‌ରେ ହୋଟେଲ ରହଣି ମିଳିବ ।'' ଭାଉଜଙ୍କ ମନ ନ ଭାଙ୍ଗିବାକୁ ମୁଁ କେବଳ ହଁ ହାଁ ହିଁ ମାରିଥିଲି । ତେବେ କେବଳ ସହର ନଗର ନୁହେଁ, ଗାଁଗଣ୍ଡାର ଏଇ ଭାଉଜ-ଖୁଡ଼ୀମାନେ ମଧ୍ୟ, ଭାରତକୁ ପାଶ୍ଚାତ୍ୟ ସଭ୍ୟଭୁକ୍ତ କରିବା ଲକ୍ଷ୍ୟରେ ଯେ ନଗ୍ନଫେସନକୁ ଆଦରି ନେଲେଣି ଏହା ମୋର ହୃଦ୍‌ବୋଧ ହେଲା । ଭାଉଜଙ୍କ ଚୂନଛଡ଼ା କାନ୍ଥରେ ମଧୁସାପ୍ରେ, ମନପ୍ରୀତ୍‌ବାର, ସୁସ୍ମିତା ସେନ୍, ଐଶ୍ୱର୍ଯ୍ୟା ରାୟ, ରୁଚି ମାଲହୋତ୍ରା, ପ୍ରୀତି ମଙ୍କୋଚିଆ, ସନ୍ଧ୍ୟାଚିବ୍ ଓ ମିସ୍ ଉଷସୀ ପ୍ରଭୃତି ସୁନ୍ଦରୀମାନେ ମୁରୁକା ହସ ହସୁଥିଲେ । ଟେପ୍‌ରେ ବାଜୁଥିଲା, ରଙ୍ଗୀଲାର ''ଆଇରେ ଆଇରେ'' ଗୀତର ସ୍ୱର । ତଳେ ବିଛାଡ଼ି ହୋଇ ପଡ଼ିଥିଲା ବିଭିନ୍ନ ହୋଟେଲ ଦ୍ୱାରା ଆୟୋଜିତ ନୃତ୍ୟ, ଗୀତ ଓ ଫେସନ୍ ସୋ'ର ଆକର୍ଷଣୀୟ ବିଜ୍ଞାପନ । ଆସନ୍ତାକାଲି, ୧୯୯୭ ବର୍ଷକୁ ସ୍ୱାଗତ କରିବାପାଇଁ ଆଉ ମନ୍ଦିର, ମସ୍‌ଜିଦ୍ ବା ଚର୍ଚ୍ଚରେ ଦୀପଜଳା ପର୍ବ ବା କବିଙ୍କ କବିତା ଆସରର ବୋଧହୁଏ ପ୍ରୟୋଜନ ନଥିଲା ।

ସଂଧ୍ୟା ହୋଇ ଆସୁଥିଲା । ବ୍ରଜନନା କନ୍ଥାଟାଏ ଘୋଡ଼ିହୋଇ, ପିଣ୍ଡାଟାରେ ବସି, ବାଡ଼ିଟାଏ ଧରି, ତୁଚ୍ଛାଟାରେ ହାସ୍ ହାସ୍ କହି କାଉ ଉଡ଼ାଉଥିଲେ । ଦୁଆରେ କାର୍ ଲାଗିଥିଲା । ହାଇହିଲ, ନେଟ୍ ବ୍ଲାଉଜ୍ ସହ ବବ୍ ବାଳଧାରିଣୀ ବିନିଭାଉଜ ଓରଫ ବିନୀତା ମିଶ୍ର ଘରୁ ଗୋଡ଼ କାଢୁଥିଲେ । ଝରକା ଫାଙ୍କରେ ଚାହିଁ ରହିଥିଲେ ନିର୍ଲିପ୍ତ ଛୋଟ ଛୋଟ ଆଖି କେତୋଟି ।

ମୁଁ ଦେଖୁଥିଲି କେବଳ ବିନିଭାଉଜ ନୁହେଁ, ସହର, ଗ୍ରାମର ଶହ ଶହ ଝିଅ-ବୋହୂ, ମଡ଼େଲ ସୋ'ରେ ଭାଗନେବା ପାଇଁ କେମିତି ସହରର ଅତ୍ୟାଧୁନିକ ହୋଟେଲ୍‌ମାନଙ୍କରେ ଧସେଇ ପଶୁଛନ୍ତି । ସହରୀ ସଭ୍ୟତାର ଏ ଅଶ୍ଳୀଳ ଆୟୋଜନ ଭିତରେ, ସଂସ୍କୃତିମୟ ଭାରତର ନଗ୍ନ ପାଶ୍ଚାତ୍ୟ ହନୁକରଣ ଭିତରେ, ହଜି ଯାଉ ଯାଉ, ମୁଁ ଖୋଜୁଥିଲି ମୋର ଅତୀତର ବିନିଭାଉଜଙ୍କୁ । ହତବାକ୍ ହୋଇ ମୁଁ ଦେଖୁଥିଲି ମୋର ପୂଜ୍ୟା ଭାଉଜ କିପରି ଆଲିଶା ଚିନାଇଙ୍କ ''ମେଡ୍ ଇନ୍-ଇଣ୍ଡିଆ'' ଗୀତର ତାଳେ ତାଳେ ବିନୀତା ମିଶ୍ର ହୋଇ ରକ୍ ଡ୍ୟାନସ୍ କରୁଛନ୍ତି । ମୋତେ ଶୁଭୁଥିଲା ଜନୈକ ବୟୋବୃଦ୍ଧ ନେତାଙ୍କ ଯୌନବ୍ୟଭିଚାରକୁ ଶିଳ୍ପଘୋଷଣାର ଶବ୍ଦ ।

